# ଜେ. କ୍ରିଷ୍ଣମୂର୍ତ୍ତି
# କିଏ
# ସେ
# କାହିଁକି

( ସଂକ୍ଷିପ୍ତ ଜୀବନୀ )

ବସନ୍ତ କୁମାରୀ ପଟ୍ଟନାୟକ
ପୁଣ୍ୟପ୍ରଭା ପଟ୍ଟନାୟକ
ଆରତ୍ତ ମହାନ୍ତି

ବସନ୍ତ କୁମାରୀ ପଟ୍ଟନାୟକ — **Basanta Kumari Patnaik**
ପୁଣ୍ୟପ୍ରଭା ପଟ୍ଟନାୟକ — **Punyaprova Patnaik**
ଆରତି ମହାନ୍ତି — **Arati Mohanti**

ପ୍ରକାଶକ — Publisher
ସେଲ୍ଫ୍ ଏଡୁକେସନ୍ ଟ୍ରଷ୍ଟ — **Self Education Trust**
ପୁରୀଘାଟ ରୋଡ୍ — Purighat Road
କଟକ-୯ — Cuttack-9

ପ୍ରଥମ ପ୍ରକାଶ : — Published :
୧୯୮୬ — **1986**
(ଦୁଇ ହଜାର ମୁଦ୍ରଣ) — (2000 Print)

ମୂଲ୍ୟ : — Price :
ବନ୍ଧାଇ ସହ ପାଞ୍ଚଟଙ୍କା — Rupees **Five** only

ପ୍ରଚ୍ଛଦଶିଳ୍ପୀ : — Cover Design :
ଶ୍ରୀ ଉଦୟ ନାରାୟଣ ଜେନା — **Sri Uday Narayan Jena**

ମୁଦ୍ରଣ : — Printer :
ଗୀତାଞ୍ଜଳି ପ୍ରେସ — **Gitanjali Press**
କଟକ-୭୫୩୦୦୨ — Cuttack-753002

"From the nineteen twenties I have been saying that there should be no interpreters of the teachings for they distort the teachings and it becomes a means of exploitation. No interpreters are necessary for each person should observe directly his own activities, not according to any theory or authority. Unfortunately interpreters have sprung up, a fact for which we are in no way responsible. In recent years several people have asserted that they are my successors and that they have been especially chosen by me to disseminate the teachings. I have said, and I again repeat, that there are no representatives of Krishnamurti personally or of his teachings during or after his lifetime. I am very sorry that this has to be said again."*

---

* From Bulletin No. 7, 1970 of Krishnamurti Foundation in England.

# ସୂଚୀପତ୍ର





# ବାଲ୍ୟକାଳ

ଆନ୍ଧ୍ର ପ୍ରଦେଶର ଚିତ୍ତୁର ଜିଲ୍ଲାରେ ମଦନାପଲ୍ଲୀ ବୋଲି ଯୋଉ ଗ୍ରୋଟ ସହରଟିଏ ଅଛି, ସେଇଠି ୧୮୯୫ ମସିହା ମଇ ୧୧ ତାରିଖ ଦିନ ଏକ ନୈଷ୍ଠିକ ତେଲଗୁ ବ୍ରାହ୍ମଣ ପରିବାରରେ ଜିଡ୍ଡୁ କ୍ରିଷ୍ଣମୂର୍ତ୍ତି ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ବାପା ଜିଡ୍ଡୁ ନାରାୟଣିୟା ସେତେ-ବେଳକାର ଇଂରେଜ ଶାସନ ଅମଳରେ ରାଜସ୍ୱ ବିଭାଗର ଜଣେ ବଡ଼ ଚାକିରିଆ ଥିଲେ, ଆଉ ତାଙ୍କ ଚାକିରି କାଳ ଭିତରେ ସେ ତହସିଲଦାର ଓ ଜିଲ୍ଲା ମାଜିଷ୍ଟ୍ରେଟ୍ ପଦବୀରେ ରହିଥିଲେ । ତେଣୁ ଭାରତୀୟ ମାପକାଠିରେ ତାଙ୍କ ପରିବାରଟି ସ୍ୱଚ୍ଛଳ ଅବସ୍ଥାର ଥିଲା ବୋଲି ଗଣା-ଯିବ । ତାଙ୍କ ଜେଜେ ବାପା ଜଣେ ଅତି ଶିକ୍ଷିତ ଓ ସରକାରୀ ଚାକିରିଆ ଥିଲେ । ଅଣଜେଜେ ବାପା ମଧ୍ୟ ଇଷ୍ଟ ଇଣ୍ଡିଆ କମ୍ପାନୀ ଅଧୀନରେ ଗୋଟିଏ ଦାୟିତ୍ୱପୂର୍ଣ୍ଣ ପଦବୀରେ ଥିଲେ ଏବଂ ସଂସ୍କୃତ ଭାଷାରେ ତାଙ୍କର ଅତି ପାଣ୍ଡିତ୍ୟ ଥିଲା ।

ତାଙ୍କ ମାଆଙ୍କର ନାଆଁ ଜେ· ସଞ୍ଜୀବମ୍ମା । ସେ ଅତ୍ୟନ୍ତ ଧର୍ମପ୍ରାଣା ଥିଲେ । ତାଙ୍କର ସବୁ ମିଶି ଏଗାରଟି ପିଲା ଭିତରୁ ଛଅଟି ମାତ୍ର ବଞ୍ଚି ରହିଥିଲେ, ବାକି ପାଞ୍ଚଟି ଛୁଆବୟସରୁ ହିଁ ମରି ଯାଇଥିଲେ । କ୍ରିଷ୍ଣମୂର୍ତ୍ତି ହେଉଛନ୍ତି ତାଙ୍କର ଅଷ୍ଟମ ଗର୍ଭର ସନ୍ତାନ । ତେଣୁ ଶ୍ରୀକୃଷ୍ଣଙ୍କ ନାମ ଅନୁସାରେ ତାଙ୍କ ନାଆଁ ରଖା ଯାଇଥିଲା—କୃଷ୍ଣମୂର୍ତ୍ତି ।

ସେ କାଳରେ ତେଲଗୁ ବ୍ରାହ୍ମଣ ଘରମାନଙ୍କରେ ଜାତିଆଣ ପ୍ରଥାକୁ ଭାରି ମାନିକରି ଚଳୁଥିଲେ । ଆଉ ସାହେବମାନେ ତ ସହଜେ ଅଛୁଆଁ ଜାତି ଭିତରେ ଗଣା ହେଉଥିଲେ; ଘରେ ତାଙ୍କର ପାଦ ପଡ଼ିଲା ତ ଗଲା ସରିଗଲା ସବୁ, ସେ ଜାଗାକୁ ଧୋଇ ଧାଇ ପବିତ୍ର ନ କଲାପାଏ

କାହାର ନସ୍ତାର ନ ଥିଲା । ତେଣୁ କୌଣସି ସାହେବ ଲୋକ ନାରାୟଣିୟାଙ୍କ ଘରକୁ କାମରେ ଆସିଲେ, ସେମାନଙ୍କ ଯିବା ପରେ ପରେ ସେ ଘର ଧୂଆ ହେଉଥିଲା ।

କୃଷ୍ଣମୂର୍ତ୍ତିଙ୍କ ଜନ୍ମ ଆଗରୁ ତାଙ୍କ ମାଆ ସଂଜୀବମ୍ମାଙ୍କୁ କେମିତି ଗୋଟାଏ ଆଭାସ ମିଳିଥିଲା ଯେ ତାଙ୍କର ଏଇ ଅଷ୍ଟମ ଗର୍ଭର ପିଲାଟି ଖୁବ୍ ବିଖ୍ୟାତ ହେବ, ସେ ଜଣେ ଅସାଧାରଣ ମଣିଷ ହେବ । ସେଇଥିପାଇଁ ଖାସ୍ ସେ ଜିଦ୍ ଧରି ବସିଲେ ଯେ ଅନ୍ୟ କୋଉଠି ନୁହଁ— ତାଙ୍କ ତଳ ମହଲର ଠାକୁର ଘରେ ହିଁ ଅନୁଡ଼ି ଜଳିବ ।

ସତକୁ ସତ ସେଇ ଠାକୁର ଘରେ ୧୧-୫-୧୮୯୫, ରାତି ଘ ୧୨-୩୦ ମିନିଟରେ କୃଷ୍ଣମୂର୍ତ୍ତିଙ୍କର ଜନ୍ମ । ତା ପରଦିନ ସେଠାକାର ଜଣେ ଅତି ବିଖ୍ୟାତ ଗଣକଙ୍କୁ ପିଲାର ଜାତକ କଷିବାକୁ ଦିଆ ଯାଇଥିଲା । ଜାତକ ଗଣନା କରିସାରି ବିନା ଦ୍ୱିଧାରେ ଗଣକ କହିଥିଲେ ଯେ ପୁଅଟି ନିଶ୍ଚେ ଜଣେ ବିଖ୍ୟାତ ଲୋକ ହେବ । ଏମିତି କି ଏହାର କିଛି ବର୍ଷ ପର୍ଯ୍ୟନ୍ତ ନାରାୟଣିୟାଙ୍କ ସହିତ କେବେବେଳେ ଭେଟ ହୋଇଗଲେ ସେ ତାଙ୍କୁ ବରାବର ପୁଅ କଥା ପଚାରୁଥିଲେ, ଆଉ ତାଙ୍କ ଠାରୁ ନିରାଶ ଜବାବ ଶୁଣି, କହୁଥିଲେ "ଧୈର୍ଯ୍ୟଧର, ଧୈର୍ଯ୍ୟଧର, ଦେଖିବ ମୁଁ ତମକୁ ଯାହା କହୁଛି, ସେଇଟା ନିଶ୍ଚେ ଫଳିବ – ଏ ପିଲା ଜଣେ ବରାଟ ମଣିଷ ହେବ, ଅତି ଅଦ୍ଭୁତ, ଅତି ମହାନ ହେବ ।" ନାରାୟଣିୟାଙ୍କର ଅନ୍ୟ ରକମ ଭାବିବା ତ ସ୍ୱାଭାବିକ କଥା, କାରଣ ପିଲାଟି ଦିନୁ କୃଷ୍ଣମୂର୍ତ୍ତି ଅତି ଭୋଳା, ଆଉ ବୋକା ସ୍ୱଭାବର ଜଣା ଯାଉଥିଲେ ।

ସେ ଯେତେବେଳେ ଦୁଇ ବର୍ଷର ଛୁଆ, ନାରାୟଣିୟା କୁଡାପ୍ପା ବୋଲି ଗୋଟିଏ ମେଲେରିଆ ମୁଲକରେ ଚାକିରି କରୁଥିଲେ । ସେଠି ଥିବାବେଳେ କୃଷ୍ଣମୂର୍ତ୍ତିଙ୍କୁ ମେଲେରିଆ ଜର ଧରିଲା । ସେ ଜର ତାଙ୍କୁ ଏମିତି ଭୋଗେଇଲା ଯେ ତାଙ୍କର ବଞ୍ଚିବାର ଆଶା ଆଉ ରହିଲା ନାହିଁ । ଭାଗ୍ୟକୁ ଏତିକବେଳେ ନାରାୟଣିୟାଙ୍କର କୁଡାପ୍ପାରୁ କାଦ୍ରିକୁ ବଦଳି ହୋଇଗଲା । ତେବେ ସୁଦ୍ଧା କୃଷ୍ଣମୂର୍ତ୍ତି ବରାବର ସେଇ ଜରରେ

ବେଗିବାରେ ଲାଗିଲେ, ତାଙ୍କ ସ୍ୱାସ୍ଥ୍ୟ ଆଉ କେତେବେଳେ ହେଲେ ଭଲ ରହିଲା ନାହିଁ ।

କୃଷ୍ଣମୂର୍ତ୍ତିଙ୍କ ଉପରେ ଗୋଟିଏ ଭାଇ ଓ ଯୋଡ଼ିଏ ଭଉଣୀ ଥିଲେ, ସେ କିନ୍ତୁ ତାଙ୍କ ତଳ ଭାଇଟିକୁ ସବୁଠୁ ବେଶୀ ଭଲ ପାଉଥିଲେ । ସେ ଭାଇଟି ତାଙ୍କ ଠାରୁ ତିନି ବର୍ଷ ସାନ ଥିଲା—ନାଆଁ ନିତ୍ୟାନନ୍ଦ । କୃଷ୍ଣମୂର୍ତ୍ତି ଯେତିକି ମାନ୍ଦା ସ୍ୱଭାବର ଥିଲେ, ନିତ୍ୟାନନ୍ଦ ସେତିକି ତୀକ୍ଷ୍ଣ ବୁଦ୍ଧି ଓ ଚାଲାଖ ଚତୁର ଥିଲେ । କୃଷ୍ଣମୂର୍ତ୍ତି ନିଜ ମନର ଭାବକୁ ଆଦୌ ପ୍ରକାଶ କରି ପାରୁ ନ ଥିଲେ, ସଦାବେଳେ କେମିତି ଗୋଟାଏ କଳ୍ପନା ଭିତରେ ହୋଇ ରହୁଥିଲେ; ତାଙ୍କର ବଡ଼ ବଡ଼ ଆଖି ଦୁଇଟା ସବୁବେଳେ ଭାବ-ମଗ୍ନ ଥିବା ପରି ଜଣା ଯାଉଥିଲା । ଫଳରେ ସମସ୍ତେ ତାଙ୍କୁ ବୋକା, ହୁଣ୍ଡା ବୋଲି ବିଗୁରୁ ଥିଲେ । ହେଲେ କଣ ହବ ଭାଇ ଦୁଇଟିଙ୍କ ଭିତରେ ମମତାର ସମ୍ପର୍କ ଅତି ନିବିଡ଼ ଥିଲା ।

ଛଅ ବର୍ଷ ବୟସରେ କୃଷ୍ଣମୂର୍ତ୍ତିଙ୍କର ବ୍ରତଘର ଓ ବିଦ୍ୟାରମ୍ଭ ହୋଇଥିଲା । ସେତେବେଳକୁ ସେମାନେ କାଡ୍ଡିରେ । ତେଣୁ ସେଠା ସ୍କୁଲରେ ସେ ନାମ ଲେଖାଇଲେ । ପିଲାଟି ଦିନୁ ସେ ଏତେ ଦୟାଳୁ ସ୍ୱଭାବର ଥିଲେ ଯେ ସ୍କୁଲରୁ ଫେରିଲା ପରେ ଅଧିକାଂଶ ଦିନ ଦେଖାଯାଏ ତାଙ୍କ ପେନ୍‌ସିଲ୍, ସିଲଟ୍ ବା ବହିରୁ କିଛି ନା କିଛି ଗୋଟାଏ ନ ଥାଏ—ସ୍କୁଲର କୋଉ ଗୋଟିଏ ଗରିବ ପିଲାକୁ ସେ ଦେଇ ପକାଇ ଗ୍ଭଲି ଆସିଥାନ୍ତି । ଘରେ ସେମିତି ଭିକାରୀମାନେ ଭିକ ମାଗିବାକୁ ଆସିଲେ ମାଆ ଦେଇଥିବା ସବୁତକ ଗ୍ଭଉଳ ଜଣକ ଥାଳରେ ଅଜାଡ଼ ଦେଇ ଅନ୍ୟମାନଙ୍କ ପାଇଁ ଆଣିବାକୁ ପୁଣି ଘର ଭିତରକୁ ଧାଉଁଥିଲେ । ଭାଇ ଭଉଣୀଙ୍କ ପ୍ରତି ମଧ୍ୟ ସେ ସେମିତି ଉଦାର ଥିଲେ । ଘରେ ଯାହା ମିଠେଇ ତିଆରି ହୁଏ, କୃଷ୍ଣମୂର୍ତ୍ତି ନିଜ ଭାଗରୁ ଅଳ୍ପ ଟିକିଏ ରଖି ବଳକାତକ ଅନ୍ୟ ଭାଇମାନଙ୍କୁ ବାଣ୍ଟି ଦେଉଥିଲେ ।

କୃଷ୍ଣମୂର୍ତ୍ତି ପିଲାଦିନେ ଏତେ ଭୋଳା, ଏତେ ବୋକା ଆଉ ପଢ଼ା ପଢ଼ିରେ ବି ସେମିତି ଏତେ ମାନ୍ଦା ଥିଲେ ଯେ ତାଙ୍କ ବାପା ସେହି

ଗଣକଙ୍କ କଥାକୁ ମୋଟେ ବିଶ୍ୱାସ କରି ପାରୁ ନଥିଲେ । ପିଲାଦିନଯାକ ମେଲେରିଆ ଜରରେ ଭୋଗି ଭୋଗି ତ ପଢ଼ା ପଢ଼ିରେ ଯାବତ ବିଘ୍ନ ଘଟିଥିଲା, ତହିଁରେ ପୁଣି ପୋଥିପାଠକୁ ସେ ଆଦୌ ଭଲ ପାଉ ନ ଥିଲେ । ତାଙ୍କର କଳ୍ପନା-ବିଭୋରତାକୁ ଲୋକେ ସିନା ଦୁଷ୍ଟାମି ବୋଲି ଧରି ନେଇଥିଲେ, ନ ହେଲେ ସବୁ ଜିନିଷକୁ ଗଭୀର ଆଗ୍ରହରେ, ତୀକ୍ଷ୍ଣ ଭାବରେ ଲକ୍ଷ୍ୟ କରିବାଟା ତାଙ୍କ ସ୍ୱଭାବର ଏକ ଅଙ୍ଗ ଥିଲା । ଘଣ୍ଟା ଘଣ୍ଟା ଧରି ସେମିତି ଠିଆ ଠିଆ ତେ ଗଛଗୁଡ଼ାକୁ, ଆକାଶର ମେଘ-ଗୁଡ଼ାକୁ ନିରେଖି ନିରେଖି ଗଲା ଦେଖୁଥିବେ—ଦେଖୁଥିବେ, ନ ହେଲେ ଭୂଇଁଟା ଉପରେ ଠୁଙ୍କା ହୋଇ ବସି ଘାସ, ବୁଦା, ଲଟା କି ପୋକ ଜୋକ, କୀଟ ପତଙ୍ଗଗୁଡ଼ାକୁ ଏକ ଲୟରେ ଗୃହିଁ ଗୃହିଁ ଦେଖୁଥିବେ । ଏମିତି, ସୃଷ୍ଟିର ପ୍ରତ୍ୟେକଟି ଜିନିଷକୁ ଠିକ ନିଖି ଭାବରେ ଲକ୍ଷ୍ୟ କରି ଦେଖିବାଟା ତାଙ୍କ ଚରିତ୍ରର ଏକ ବିଶେଷତ୍ୱ ଥିଲା । ଏଇ ଗୁଣଟା ତାଙ୍କ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଅତୁଟ ରହିଥିଲା ।

ଏ ସବୁ ସାଙ୍ଗକୁ ବଡ଼ ଅଦ୍ଭୁତ ଭାବରେ ମନଟା ତାଙ୍କର ଯନ୍ତ୍ରପାତି ଦିଗକୁ ମଧ୍ୟ କୌତୂହଳୀ ଥିଲା । ଥରେ ପିଲାଦିନେ ବାପା ନ ଥିବାବେଳେ ତାଙ୍କର ଘଣ୍ଟାଟିକୁ ସେ ଖୋଲି ଦେଇ, ଆଉ ତାକୁ ନ ସଜାଡ଼ିବା ଯାଏ ସ୍କୁଲ ଯିବାକୁ କି ଖାଇବାକୁ ସୁଦ୍ଧା ଉଠିଲେ ନାହିଁ । ବଡ଼ ଦିନେ ବି ସେମିତି ମଟର ଗାଡ଼ିର ଇଞ୍ଜିନକୁ ଖୋଲି ପକାଇ ପୁଣି ସଜାଡ଼ି ଦେଉଥିଲେ ।

ପିଲାଟି ଦିନୁ ସେ ବଡ଼ ଧର୍ମ ପରାୟଣ ସ୍ୱଭାବର ଥିଲେ । କାଡ୍ପିରେ ଥିବାବେଳେ ତାଙ୍କ ଘର ପାଖରେ ପ୍ରସିଦ୍ଧ ନରସିଂହ ସ୍ୱାମୀଙ୍କର ଗୋଟାଏ ବିରାଟ ମନ୍ଦିର ଥିଲା । କୃଷ୍ଣମୂର୍ତ୍ତି ଆଉ ନିତ୍ୟାନନ୍ଦ ଦିହେଁଯାକ ତାଙ୍କ ମାଆଙ୍କ ସହିତ ନିତି ସଞ୍ଜବେଳେ ସେଇ ମନ୍ଦିରକୁ ଦର୍ଶନ ପାଇଁ ଯାଉଥିଲେ ।

୧୯୦୩ ମସିହାରେ ତାଙ୍କୁ ଯେତେବେଳେ ଆଠ ବର୍ଷ ବୟସ, ତାଙ୍କ ବାପାଙ୍କର ପୁଣି ସେଇ ମେଲେରିଆ ଇଲାକା କୁଦାପ୍ପାକୁ ବଦଳି ହୋଇଗଲା, ଆଉ ତା ପର ବର୍ଷ କୃଷ୍ଣମୂର୍ତ୍ତିଙ୍କ ବଡ଼ ଭଉଣୀ ମରିଗଲେ ।

ଏହି ଦାରୁଣ ଆଘାତରେ ତାଙ୍କର ମାଆ ଏକବାରେ ଭାଙ୍ଗି ପଡ଼ିଲେ ।

ବଡ଼ ଭଉଣୀ ମଲାପରେ ପ୍ରଥମ କରି ଜଣା ପଡ଼ିଲା ଯେ କୃଷ୍ଣମୂର୍ତ୍ତିଙ୍କର ଅତୀନ୍ଦ୍ରିୟ ଦୃଷ୍ଟି ଅଛି । ତାଙ୍କ ମାଆଙ୍କର ମଧ୍ୟ ଅତୀନ୍ଦ୍ରିୟ ଦୃଷ୍ଟି ଥିଲା । କାରଣ କୃଷ୍ଣମୂର୍ତ୍ତିଙ୍କୁ ଯେତେବେଳେ ଅଠର ବର୍ଷ ବୟସ, ସେହି ସମୟରେ ସେ ତାଙ୍କର ବାଲ୍ୟ ଜୀବନ ସ୍ମୃତି-କଥାରେ ଲେଖିଛନ୍ତି ଯେ ତାଙ୍କ ବଡ଼ ଭଉଣୀ ମରିଗଲା ପରେ ସେ ଓ ତାଙ୍କ ମାଆ ସେଇ ଭଉଣୀର ଅଶରୀର ମୂର୍ତ୍ତିକୁ ଦେଖିପାରୁ ଥିଲେ । ଭଉଣୀର ମରଣ ଓ ତାର ଶବ ଦାହ ଇତ୍ୟାଦି ନିଜ ଆଖିରେ ଦେଖିବା ପରେ, ପୁଣି ସେହି କାୟାକୁ ଦେଖିବାରେ ତାଙ୍କୁ ଭୟ ଲାଗିଲେ, ମାଆ ତାଙ୍କୁ ବୁଝେଇ ଦେଇ, ମନରେ ସାହସ ଦେଉଥିଲେ । ଆହୁରି ମଧ୍ୟ ସେହି ବାଲ୍ୟ-ଜୀବନ ସ୍ମୃତି-କଥାରେ ସେ ଲେଖିଛନ୍ତି ଯେ ତାଙ୍କ ମାଆ ଲୋକମାନଙ୍କର ଜ୍ୟୋତି ବଳୟ ଦେଖି ପାରୁଥିଲେ, ଆଉ ସେ ନିଜେ ମଧ୍ୟ ବେଳେ ବେଳେ ଲୋକମାନଙ୍କର ଜ୍ୟୋତିବଳୟ ଦେଖି ପାରୁଥିଲେ ।

ବଡ଼ ଭଉଣୀ ମରିବାର ଦୁଇ ବର୍ଷ ପରେ ୧୯୦୫ ମସିହାରେ ସଂଜୀବମ୍ମା ମଧ୍ୟ ଆର ପୁରକୁ ଚାଲିଗଲେ । ସେତେବେଳକୁ କୃଷ୍ଣମୂର୍ତ୍ତିଙ୍କର ବୟସ ଦଶ ପୂରି ଏଗାର । ମାଆକୁ ସେ ପ୍ରାଣଠୁ ବଳି ଭଲ ପାଉଥିଲେ । ମା' ତାଙ୍କର ଅତ୍ୟନ୍ତ ସ୍ନେହମୟୀ ଥିଲେ; ତାଙ୍କର ସ୍ନେହ ଆଦର କୃଷ୍ଣ-ମୂର୍ତ୍ତିଙ୍କର ସବୁଠୁ ବଡ଼ ସମ୍ବଳ ଥିଲା । ମାଆ ମରିଯିବା ପରେ ଥରକୁ ଥର ସେ ମାଆକୁ ଦେଖିବାରେ ଲାଗିଲେ । ଏ ବିଷୟରେ ସେ ତାଙ୍କର ସେହି ବାଲ୍ୟ-ଜୀବନ ବୃତ୍ତାନ୍ତରେ ଲେଖିଛନ୍ତି "ମୋର ପରିଷ୍କାର ମନେ ଅଛି, ଥରେ ମୋ ମାଆର ଛାୟାମୂର୍ତ୍ତିଟା ସିଡ଼ି ବାଟେ ଉପର ମହଲାକୁ ଗଲାବେଳେ ମୁଁ ତା ପଛେ ପଛେ ଗୋଡ଼େଇ ଥିଲି । ହାତଟାକୁ ବଢ଼ାଇ ଦେଇ ତା ଶାଢ଼ୀଟାକୁ ମୁଁ ଧରି ପକେଇଲି ପରି ମତେ ଲାଗିଲା, କିନ୍ତୁ ସିଡ଼ିର ଶେଷ ଧାପରେ ପହଞ୍ଚିବା ମାତ୍ରେ ସେ ହଠାତ୍ କୁଆଡ଼େ ଉଭେଇ ଗଲା । ମୁଁ ସ୍କୁଲ ଗଲାବେଳେ ସେ ବି ମୋ ପଛେ ପଛେ ଆସୁଥିବାର ଶବ୍ଦ ଶୁଣି ପାରୁଥିଲି । ଏଇ କଥାଟା ମୋର ବିଶେଷ ଭାବରେ ମନେ ଅଛି

କାରଣ ତା' ଚୁଡ଼ିର ରୁଣୁ ଝୁଣୁ ଶବ୍ଦ ମୋ କାନରେ ପଡ଼ୁଥିଲା, ଚମକି ପଡ଼ି ପଛକୁ ଫେରି ଚାହିଁଲେ ତା' ଶାଢ଼ୀ, ଆଉ ମୁହଁରୁ ଟିକିଏ ଝାପ୍‌ସା ହୋଇ ଦିଶିଯାଏ । ମୁଁ ଘରୁ ଗୋଡ଼ କାଢ଼ିଲେ ହିଁ ଏଇ କଥାଟା ପ୍ରାୟ ଘଟୁଥିଲା ।"

କୃଷ୍ଣମୂର୍ତ୍ତିଙ୍କର ସ୍କୁଲ-ଜୀବନ ଜମାରୁ ସୁଖକର ନ ଥିଲା । କାରଣ ଏକେ ଦୁର୍ବଳ ସ୍ୱାସ୍ଥ୍ୟ, ତହିଁରେ ପୁଣି ପାଠ ପଢ଼ାରେ ମାନ୍ଦା, ତା ସାଙ୍ଗକୁ ମାଷ୍ଟ୍ରମାନଙ୍କର ବେତ ମାଡ଼, ଗାଳି ଆଉ ଘରକୁ ବୋଝେ ପାଠ । ମାଆର ଗଭୀର ସ୍ନେହ ଆଦର ଏ ସବୁର ଦୁଃଖକୁ ଯାହା ବା ଭୁଲାଇ ଦେଉଥିଲା, ସେତକ ବି ମା' ସହିତ ଚାଲିଗଲା । ବାପା ମଧ୍ୟ ସବୁବେଳେ କାମରେ ବ୍ୟସ୍ତ ରହି କାହାରି ପ୍ରତି ଧ୍ୟାନ ଦେଇ ପାରୁ ନ ଥିଲେ ।

ସଞ୍ଜୀବମ୍ମାଙ୍କର ମୃତ୍ୟୁ ପରେ ଖାସ୍ ପିଲାମାନଙ୍କ ସ୍ୱାସ୍ଥ୍ୟ ଲାଗି ନାରାୟଣିୟା କିଛି ମାସ ଛୁଟି ନେଇ ମଦନାପଲ୍ଲୀକୁ ଚାଲି ଆସିଲେ, ଆଉ ସେଇଠି ତାଙ୍କ ଚାକିରି ଶେଷ ପର୍ଯ୍ୟନ୍ତ ରହିଥିଲେ । କୃଷ୍ଣମୂର୍ତ୍ତି ଓ ନିତ୍ୟାନନ୍ଦ ମଦନା ପଲ୍ଲୀର ଗୋଟିଏ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ନାଆଁ ଲେଖେଇଲେ ଓ ଦୁଇ ବର୍ଷ ଯାଏ ସେଇ ସ୍କୁଲରେ ପାଠ ପଢ଼ିଲେ ।

ମଦନାପଲ୍ଲୀରେ ତାଙ୍କ ଘରଠୁ ଦୁଇ ମାଇଲ ଦୂରରେ ଗୋଟିଏ ନିଛାଟିଆ ପାହାଡ଼ ଥିଲା । ସେଇ ପାହାଡ଼ ଚୂଡ଼ାରେ ମନ୍ଦିରଟିଏ । ସେଠିକି ଯିବା ପାଇଁ ରାସ୍ତା ଅତି ବାଜେ ଥିଲା । ସେଇଥିପାଇଁ ଖାସ୍ ସେ ପାହାଡ଼ ଉପରକୁ ଯିବା ପାଇଁ କୋଉ ପିଲା ରାଜି ହେଉ ନ ଥିଲେ; ହେଲେ ସ୍କୁଲ ସରିଲାପରେ ନିତି ନିତି କୃଷ୍ଣମୂର୍ତ୍ତି ସେଠିକି ଯାଉଥିଲେ, ସାଙ୍ଗରେ ସାନ ଭାଇ ନିତ୍ୟାନନ୍ଦ । ସେଇଟା ତାଙ୍କର ଗୋଟାଏ ଅଭ୍ୟାସରେ ପଡ଼ି ଯାଇଥିଲା ।

କୃଷ୍ଣମୂର୍ତ୍ତିଙ୍କ ଠାରେ ଗର୍ବ ଅହଙ୍କାର ବୋଲି କିଛି ନ ଥିଲା । ବାପା ତାଙ୍କର ଜଣେ ବଡ ଚାକିରିଆ ଥିଲେ, ଜିଲ୍ଲା ମାଜିଷ୍ଟ୍ରେଟ ହୋଇ-ଥିଲେ । ତଥାପି ବଣ ଭୋଜି କି ସେମିତିକା କିଛି ଗୋଟାଏ ମଉଜ

କରିବାକୁ ଗଲାବେଳେ ଗୃହର ଚପରାଶିଙ୍କ ହାତରୁ ଖାଇବା ଜିନିଷ ନେଇ ଆସି ସେ ନିଜେ ବୋହି ବୋହିକା ଗୃହକୁ ଥିଲେ । ତାଙ୍କର ଏଇ ନିକୁଛିଆ କାମ ଦେଖି ଅନ୍ୟ ଭାଇମାନେ ନାକ ଟେକୁଥିଲେ କାରଣ ତା ଦ୍ୱାରା ସେମାନଙ୍କ ନିଜର ମାନ ଉପରକୁ ଆଞ୍ଚ ଆସୁଥିଲା; ହେଲେ କୃଷ୍ଣମୂର୍ତ୍ତିଙ୍କର ସେ ଆଡ଼କୁ ମୋଟେ ନଜର ନ ଥିଲା ।

୧୮୮୨ ମସିହାରୁ ନାରାୟଣିୟା ନିଜକୁ ବ୍ରହ୍ମବିଦ୍ୟା ସମିତିର ସଭ୍ୟ କରି ନେଇଥିଲେ । ସ୍ୱାମୀଙ୍କର ଏହି ଭାବ ପ୍ରତି ସଞ୍ଜୀବମ୍ମାଙ୍କର ପୂରା ସମର୍ଥନ ଥିଲା । ତାଙ୍କ ଠାକୁର ଘର କାନ୍ଥରେ ଅନ୍ୟାନ୍ୟ ଦେବ ଦେବୀଙ୍କ ଫଟୋ ସହିତ ବ୍ରହ୍ମବିଦ୍ୟା ସମିତିର ନେତ୍ରୀ ଶ୍ରୀମତୀ ଆନି ବେସାନ୍ତଙ୍କ ଫଟୋ ମଧ୍ୟ ସ୍ଥାନ ପାଇଥିଲା । ଆନି ବେସାନ୍ତଙ୍କ ପ୍ରତି ସଞ୍ଜୀବମ୍ମାଙ୍କ ମନରେ ଗଭୀର ଶ୍ରଦ୍ଧା ଓ ଭକ୍ତି ପୂରି ରହିଥିଲା । ବଞ୍ଚିଥିବାବେଳେ ସେ ଅନେକ ସମୟରେ ପୁଅ ଆଗରେ ଆନି ବେସାନ୍ତଙ୍କ ବିଷୟରେ କେତେ କେତେ କଥା ବଖାଣୁ ଥିଲେ । ତେଣୁ କୃଷ୍ଣମୂର୍ତ୍ତିଙ୍କ ମନରେ ପିଲାଟି ଦିନୁ ଶ୍ରୀମତୀ ଆନି ବେସାନ୍ତଙ୍କ ପ୍ରତି ଗଭୀର ଶ୍ରଦ୍ଧା ଦେଖା ଦେଇଥିଲା ।



## ୨

# ବ୍ରହ୍ମବିଦ୍ୟା ସମିତି ଓ କୃଷ୍ଣମୂର୍ତ୍ତି

୧୮୮୯ ମସିହାରେ ବ୍ରହ୍ମବିଦ୍ୟା ସମିତିର ପ୍ରତିଷ୍ଠାତ୍ରୀ ମାଡ଼ାମ୍ ବ୍ଲାଭାସ୍କି ତାଙ୍କର ଅଳ୍ପ କେତେଜଣ ବ୍ରହ୍ମବିଦ୍ୟା ଛାତ୍ରଙ୍କୁ କହିଥିଲେ ଯେ ବ୍ରହ୍ମବିଦ୍ୟା ସମିତି ଗଢ଼ାଯିବା ମୂଳରେ ପ୍ରକୃତ ଉଦ୍ଦେଶ୍ୟ ହେଉଛି— ଜଗତ-ଗୁରୁଙ୍କର ପୁଣି-ଆବିର୍ଭାବ ଲାଗି ମାନବ ଜାତିକୁ ପ୍ରସ୍ତୁତ କରାଇ ରଖିବା, ତା ହେଲେ ସମୟ ଆସିଲାବେଳକୁ ସମସ୍ତେ ତାଙ୍କୁ ସାଦରେ ଗ୍ରହଣ କରି ପାରିବେ । ମାଡ଼ାମ୍ ବ୍ଲାଭାସ୍କିଙ୍କର ଏଇ କଥାଟା ତାଙ୍କ ମରିବାର ପାଞ୍ଚ ବର୍ଷ ପରେ ୧୮୯୬ ମସିହାରେ ଶ୍ରୀମତୀ ଆନି ବେସାନ୍ତ ସମସ୍ତଙ୍କ ଆଗରେ ଖୋଲି ଖୋଲ ଭାବରେ ପ୍ରକାଶ କରିଥିଲେ ।

ବ୍ରହ୍ମବିଦ୍ୟା ସମିତି ଗଢ଼ାଯିବା ମୂଳରେ ଯେଉଁ ଦୁଇଜଣ ସିଦ୍ଧ ମହାପୁରୁଷଙ୍କ ଗୁପ୍ତଦାନ ଅତୁଳନୀୟ, ସେମାନେ ହେଲେ—ମହାଗୁରୁ କୁଥୁହୁମି ଓ ମହାଗୁରୁ ମୌର୍ଯ୍ୟ । ମାନବ ଜାତିର ହିତ ଲାଗି ତିବ୍ବତର ନିକାଞ୍ଚନ ପର୍ବତମାଳାର ଏକ ଗିରିସଙ୍କଟ ଭିତରେ ସେମାନେ ତାଙ୍କର ମାନବ ଶରୀରକୁ ରକ୍ଷାକରି ଚିର ଯୌବନାବସ୍ଥାରେ ରହି ଥାଆନ୍ତି । ଅଧିକାଂଶ ସମୟରେ ବ୍ରହ୍ମବିଦ୍ୟା ସମିତିର ଯୁଗ୍ମ ପ୍ରତିଷ୍ଠାତା, ଶିଷ୍ୟ କର୍ଣ୍ଣେଲ୍ ଓଲ୍‌କଟ୍ ଓ ଶିଷ୍ୟା ମାଡ଼ାମ୍ ବ୍ଲାଭାସ୍କି ଉଭୟେ ସେହି ମହାଗୁରୁମାନଙ୍କ ସହିତ କାମଲୋକରେ (Astral plane) ସାକ୍ଷାତ ଓ ପରାମର୍ଶ ଇତ୍ୟାଦି କରୁଥିଲେ ଏବଂ ବ୍ରହ୍ମବିଦ୍ୟା ସମିତିର କାର୍ଯ୍ୟପନ୍ଥା ଆଦି ନିର୍ଦ୍ଧାରଣ କରୁଥିଲେ ।

ଏହି ମହାଗୁରୁମାନଙ୍କ ଉପରକୁ ଆହୁରି ଅନେକ ଅନେକ ପାହାଚ ରହିଛି, ତହୁଁ ବଡ଼ା ତହୁଁ ବଡ଼ା ମହାମୁନି ସବୁ ଅଛନ୍ତି । ତାଙ୍କର ଭିତରୁ ଜଣେ ହେଉଛନ୍ତି ଜଗତ୍-ଗୁରୁ ମହାମୁନି ମୈତ୍ରେୟ । ସେ

ସମୟରେ ବ୍ରହ୍ମବିଦ୍ୟା ସମିତିର ବଡ଼ବଡ଼ଆମାନେ ଦୃଢ଼ ଭାବରେ ବିଶ୍ୱାସ କରୁଥିଲେ ଯେ ମହାମୁନି ମୈତ୍ରେୟ ଦୁଇଥର ଏହି ପୃଥିବୀରେ ଆବିର୍ଭାବ ହୋଇ ସାରିଛନ୍ତି—ପ୍ରଥମ ଥର ଶ୍ରୀକୃଷ୍ଣଙ୍କ ରୂପରେ ଓ ଦ୍ୱିତୀୟ ଥର ଯୀଶୁଙ୍କ ରୂପରେ । ଏଥି ମଧ୍ୟରେ ଦୁଇ ହଜାର ବର୍ଷ ବିତିଯାଇ ଥିବାରୁ ଜଗତରେ ପୁଣି ଏକ ନୂଆ ଧର୍ମ ପ୍ରତିଷ୍ଠା ପାଇଁ ମାନବ-ଶରୀର ଧାରଣ କରିବାର ସମୟ ତାଙ୍କର ଅତି ପାଖେଇ ଆସୁଥିଲା । ସେହି ନିର୍ଦ୍ଦିଷ୍ଟ ସମୟ ଆସିଗଲେ ସେ ଯୋଉ ମାନବ ଶରୀରଟିକୁ ବାଛି ନେବେ, ସେଇଟି ତାଙ୍କର କାର୍ଯ୍ୟ ସମ୍ପାଦନ ଲାଗି ଯଥେଷ୍ଟ ପରିମାଣରେ ସମ୍ବେଦନଶୀଳ ହୋଇଥିବା ଦରକାର ।

୧୮୮୩ ମସିହାରେ ଚାର୍ଲସ୍ ଉଏବ୍ଷ୍ଟର୍ ଲେଡ୍‌ବିଟର୍ ନାମକ ଜଣେ ପାଦ୍ରୀ ଏହି ବ୍ରହ୍ମବିଦ୍ୟା ସମିତିରେ ସଭ୍ୟ ରୂପେ ଯୋଗ ଦେଲେ ଓ ତା ପରବର୍ଷ ମାଡ଼ାମ୍ ବ୍ଲାଭସ୍କିଙ୍କ ସହିତ ତାଙ୍କର ପରିଚୟ ହେଲା । ମାଡ଼ାମ୍ ବ୍ଲାଭସ୍କି ତାଙ୍କୁ ଶିଷ୍ୟ ଭାବରେ ଗ୍ରହଣ କରିବା ପରେ ସେ ତାଙ୍କର ଗୀର୍ଜା ଧନ୍ଦା ଛାଡ଼ି ଦେଲେ, ଆମିଷ ଖିଆ ଛାଡ଼ି ଦେଲେ ଓ ଇଂଲଣ୍ଡ ସହିତ ନିଜର ବନ୍ଧନ ତୁଟାଇ ମାଡାମ୍ ବ୍ଲାଭସ୍କିଙ୍କ ସହିତ ଭାରତକୁ ଆସିଥିଲେ । ଲେଡ୍‌ବିଟର୍‌ଙ୍କର ଅତୀନ୍ଦ୍ରିୟ ଦୃଷ୍ଟି ଅତି ଉଚ୍ଚ କୋଟୀର ଥିଲା । ଆଡ଼ୟାର୍‌ରେ ଥିବା ସମୟରେ ତାଙ୍କଠାରେ ଏହି ଅତୀନ୍ଦ୍ରିୟ ଦୃଷ୍ଟି ଜାଗ୍ରତ ହୋଇଥିଲା, ଯାହା ଫଳରେ କି ମଣିଷମାନଙ୍କ ଠାରେ ଥିବା ଜ୍ୟୋତି ବଳୟ ସେ ଦେଖି ପାରୁଥିଲେ । ଏହା ପରେ ସେ କିଛି ବର୍ଷ ପାଇଁ ପୁଣି ବିଦେଶ ଯାଇଥିଲେ ଓ ୧୯୦୯ ମସିହାରେ ଆଡ଼ୟାରକୁ ଫେରି ଆସିଥିଲେ ।

ସେତେବେଳକୁ ବ୍ରହ୍ମବିଦ୍ୟା ସମିତିର ସଭ୍ୟମାନଙ୍କ ଭିତରେ ଏହି ମହାମୁନି ମୈତ୍ରେୟଙ୍କ ଆବିର୍ଭାବ କେଉଁ ଜଣକ ଠାରେ ଘଟିବ ବୋଲି ଖୁବ୍ ଜୋର୍‌ସୋର୍‌ରେ ଖୋଜା ଖୋଜି ଚାଲିଥିଲା । ଲେଡ୍‌ବିଟର୍ ମଧ୍ୟ ଏଥି ଭିତରେ ହ୍ୟୁବର୍ଟ ଭନ୍ ହୁକ୍ ବୋଲି ଆମେରିକାର ଗୋଟିଏ ଏଗାର ବର୍ଷିଆ ପିଲାର ଜ୍ୟୋତି-ମଣ୍ଡଳ ଦେଖି ତାଙ୍କୁ ମହାମୁନି

ମୈତ୍ରେୟଙ୍କ ଭାବୀ-ଶରୀର ହୋଇ ପାରନ୍ତି ବୋଲି ଧରି ନେଇ ଥିଲେ । ଲେଡ଼୍‌ବିଟର୍‌ଙ୍କର ଆଉ ଗୋଟିଏ ଅସାଧାରଣ ଶକ୍ତି ଥିଲା, ଦିବ୍ୟଦୃଷ୍ଟି ବଳରେ ସେ ମଣିଷର ଅତୀତ ଜୀବନଗୁଡ଼ିକ ମଧ୍ୟ ଅନୁଧ୍ୟାନ କରି ଜାଣି ପାରୁଥିଲେ ।



୧୯୦୭ ରେ ନାରାୟଣିୟା ସ୍କୁଲରୁ ବିଦାୟ ନେଲେ । ସେ ନିଜେ ବ୍ରହ୍ମବିଦ୍ୟା ସମିତିର ସଭ୍ୟ ଥିବାରୁ ସମିତିର ସେତେବେଳକାର ସଭାପତି ଆନି ବେସାନ୍ତଙ୍କୁ ଚିଠି ଲେଖି ଜଣାଇଲେ ଯେ ଏଣିକି ସେ ତାଙ୍କର ପୂର୍ଣ୍ଣ ସମୟ ଓ ସେବା ବ୍ରହ୍ମବିଦ୍ୟା ସମିତିର କାର୍ଯ୍ୟରେ ଉତ୍ସର୍ଗ କରିବାକୁ ଚାହାନ୍ତି, ଆଉ ତା ବଦଳରେ ସେ ଖାଲି ମାଡ୍ରାସ୍‌ର ଆଡ୍ୟାରଠାରେ ଥିବା ଆନ୍ତର୍ଜାତିକ ବ୍ରହ୍ମବିଦ୍ୟା ସମିତିର ପରିସର ଭିତରେ ତାଙ୍କର ଚାରୋଟି ପୁଅଙ୍କ ସହିତ ମାଗଣାରେ ରହିବାକୁ ଚାହାନ୍ତି । ତାଙ୍କର ଏହି ପ୍ରସ୍ତାବରେ ଆନି ବେସାନ୍ତ ରାଜି ହେଲେ ନାହିଁ । କିନ୍ତୁ ନାରାୟଣିୟାଙ୍କର ବାରମ୍ବାର ଅନୁରୋଧ ସାଙ୍ଗକୁ ଦୈବାତ୍ ସେତିକିବେଳେ ସେହି ବ୍ରହ୍ମବିଦ୍ୟା ସମିତିର ଜଣେ ସହକାରୀ କର୍ମଚାରୀ ଦରକାର ପଡ଼ିବାରୁ ବାଧ ହୋଇ ଆନି ବେସାନ୍ତ ତାଙ୍କ କଥାରେ ରାଜି ହେଲେ ଓ ନାରାୟଣିୟା ତାଙ୍କର ଚାରୋଟି ପୁଅ—ଶିବରାମ, କୃଷ୍ଣମୂର୍ତ୍ତି, ନିତ୍ୟାନନ୍ଦ ଓ ସବା ସାନ ସଦାନନ୍ଦଙ୍କ ସହିତ ଆଡ୍ୟାର ଚାଲି ଆସିଲେ । ସେତେବେଳକୁ ତାଙ୍କର ଅନ୍ୟ ଝିଅଟି ବିଭା ହୋଇ ଯାଇଥିଲେ ।

କିନ୍ତୁ ସମିତିର ପରିସର ଭିତରେ ଏମାନଙ୍କ ରହିବା ପାଇଁ ଘର ସୁବିଧା ନ ଥିବାରୁ ପିଲାମାନଙ୍କୁ ନେଇ ନାରାୟଣିୟା ହତା ବାହାରେ ଥିବା ଗୋଟିଏ ଛୋଟିଆ ପୁରୁଣା ଘରେ ରହିଲେ । ସେ ଘରେ ଆଲୁଅ ପବନର ସେମିତି କିଛି ସୁବିଧା ନ ଥିଲା କି ତା ପରିବେଶ ବି ସ୍ୱାସ୍ଥ୍ୟକର ନ ଥିଲା ।

୧୯୦୯ ମସିହା ଫେବୃୟାରୀ ୧୦ ତାରିଖରେ ଲେଡ୍‌ବିଟର୍ ବିଦେଶରୁ ଫେରି ଆଡ୍ୟାରରେ ପହଞ୍ଚିଲେ । ସେଇ ମାସ ପନ୍ଦର କୋଡ଼ିଏ ଦିନ ଆଗରୁ ନାରାୟଣିୟା ପିଲାମାନଙ୍କ ସହିତ ଆଡ୍ୟାର୍ ଠାରେ ରହୁଥିଲେ । ଦିନେ ସଞ୍ଜବେଳଆ ଲେଡ୍‌ବିଟର୍ ତାଙ୍କ ସହକର୍ମୀ-ମାନଙ୍କ ସହିତ ସମୁଦ୍ରରେ ଗାଧୋଇବାକୁ ଯାଇଥିଲେ । ଗାଧୋଇ ସାରି ନିଜ ବଙ୍ଗଳା ଘରକୁ ଫେରି ଆସି ‘ଜଣେ ସହକର୍ମୀଙ୍କୁ କହିଲେ ଯେ ସମୁଦ୍ର କୂଳରେ ଯୋଉ ପିଲାସବୁ ଖେଳୁଥିଲେ, ତାଙ୍କର ଭିତରୁ ଜଣକ

ଠାରେ ସେ ଅତି ଅଦ୍ଭୁତ ଜ୍ୟୋତି-ବଳୟ ଦେଖିବାକୁ ପାଇଛନ୍ତି ଓ ଏଭଳି ଜ୍ୟୋତି-ବଳୟ ସେ କେବେ କାହାରି ଠାରେ ହେଲେ ଦେଖି ନାହାନ୍ତି···ଆଶ୍ଚର୍ଯ୍ୟର କଥା ଯେ ତାଙ୍କ ପ୍ରମାଣେ ବି ସ୍ୱାର୍ଥପରତା ତା ଭିତରେ ନାହିଁ । ଏ କଥା ସାଙ୍ଗକୁ ଆହୁରି ମଧ୍ୟ ଜୋର୍ ଦେଇ କହିଲେ ଯେ ସେଇ ପିଲାଟି ଦିନେ ନା ଦିନେ ଜଣେ ମହାନ ଆଧ୍ୟାତ୍ମିକ ଗୁରୁ ହେବ ଓ ଜଣେ ବିଖ୍ୟାତ ବକ୍ତା ହେବ । ସେଇ ପିଲା ହେଉଛନ୍ତି— କୃଷ୍ଣମୂର୍ତ୍ତି ।

କୃଷ୍ଣମୂର୍ତ୍ତିଙ୍କ ସହିତ ସେହି ପ୍ରଥମ ଦେଖା ପରେ ଆଉ ଡେରି ନ କରି ଲେଡ୍‌ବିଟର ଖୋଲି ଖୋଲି ଭାବରେ କହିଦେଲେ ଯେ ଏଇ ପିଲାହିଁ ଭବିଷ୍ୟତରେ ମହାମୁନି ମୈତ୍ରେୟଙ୍କର ମାଧ୍ୟମ ହୋଇ ବାହାରିବ । କିନ୍ତୁ ସେତିକରେ ତ କଥା ସରିଯାଉ ନାହିଁ, ଯୋଉ ଜଣକ ଭବିଷ୍ୟତରେ ମହାମୁନି ମୈତ୍ରେୟଙ୍କର ମାଧ୍ୟମ ହୋଇ ବାହାରିବ, ତାର ଅନ୍ୟାନ୍ୟ ବିଷୟରେ ମୌଳିକ ଶିକ୍ଷା ରହିବା ଦରକାର, ଉପଯୁକ୍ତ ଶରୀର, ସ୍ୱାସ୍ଥ୍ୟ, ବିଦ୍ୟାଜ୍ଞାନ ଓ ଅନ୍ୟାନ୍ୟ ବିଷୟରେ ମଧ୍ୟ ତାଲିମ୍ ରହିବା ଦରକାର । ଏଣେ କୃଷ୍ଣମୂର୍ତ୍ତିଙ୍କର ସ୍ୱାସ୍ଥ୍ୟ ଦୁର୍ବଳ, ଇଂରାଜି ଜ୍ଞାନ ଏକବାରେ କମ୍, ପୁଣି ସେ ଅତି ଭୀରୁ ଓ ଲାଜକୁଳା ସ୍ୱଭାବର ପିଲା । ତାଙ୍କ ଦେହେରି ଭିତରେ ଖାଲି ସେହି ଭାବୋଦ୍ଦୀପକ ଆଖି ଯୋଡ଼ିକୁ ଛାଡ଼ି ଦେଲେ ଆଉ ଅନ୍ୟ କିଛି ହେଲେ ଆକର୍ଷଣୀୟ ନ ଥିଲା । ମୁଣ୍ଡର ବାଳ ବଡ ଆଲୁରା, ଦାନ୍ତଗୁଡ଼ାକ ବେଢ଼ଙ୍ଗିଆ, ପାଦ ମଧ୍ୟ ସୁନ୍ଦର ନୁହେଁ । ତେଣୁ ଏଭଳି କାୟାକୁ ତ ସଜାଡ଼ିବା ନିହାତି ଦରକାର । ଏ ସବୁର ଭାର ନେଲେ ଲେଡ୍‌ବିଟର୍ ଓ ତାଙ୍କର ସହକର୍ମୀମାନେ । ସେତେବେଳେ କୃଷ୍ଣମୂର୍ତ୍ତି ଓ ନିତ୍ୟାନନ୍ଦ ଆଡ଼୍ୟାର ଠାରୁ ତିନି ମାଇଲ ଦୂରରେ ଥିବା ମୈଲାପୁରର ଗୋଟିଏ ସ୍କୁଲରେ ପାଠ ପଢୁଥିଲେ ଓ ପ୍ରତିଦିନ ଚାଲିକରି ସ୍କୁଲକୁ ଯିବା ଆସିବା କରୁଥିଲେ ।

ସ୍କୁଲରେ କୃଷ୍ଣମୂର୍ତ୍ତି ଖାଲି ବୋକାଙ୍କ ପରି ହୁଅନ୍ତି । ପାଠ ପଚାରିଲେ ତାଙ୍କୁ କିଛି ଆସେ ନାହିଁ, ଫଳରେ ବେତ ମାଡ଼ ଓ ଗାଳି

ବସେ; କ୍ଲାସରୁ ତଡ଼ା ଖାଇ ବାହାର ବାରନ୍ଦାରେ ଛିଡ଼ା ହୋଇ ଆଖିରୁ ଲୁହ ଢାଳି ଢାଳି ସମୟ କଟିଯାଏ । ତାଙ୍କୁ କ୍ଲାସରୁ ତଡ଼ିଛନ୍ତି ବୋଲି ସେ ମାଷ୍ଟ୍ର ନିଜେ ମଧ୍ୟ ଭୁଲି ଯାଇଥାନ୍ତି । ଯେତେବେଳେ ଆଉ କୌଣସି ପିଲାର ବୋକାମି ଦେଖନ୍ତି, କୃଷ୍ଣମୂର୍ତ୍ତିଙ୍କ କଥା ତାଙ୍କର ମନେ ପଡ଼ିଯାଏ, ଆଉ ତାଙ୍କୁ ସେ ପୁଣି ଭିତରକୁ ଡକାଇ ଆଣନ୍ତି ।

ସେତେବେଳେ ନାରାୟଣିୟା ଆଡ଼ିୟାର ଠାରେ ବ୍ରହ୍ମବିଦ୍ୟା ସମିତିର ପରିସର ବାହାରେ ଗୋଟିଏ ଭଙ୍ଗା ଘରେ, ଏକ ଅସ୍ୱାସ୍ଥ୍ୟକର ପରିବେଶ ଭିତରେ ଚଳୁଥିଲେ । ଲେଡ୍‌ବିଟର୍ ଚାହୁଁଥିଲେ ତାଙ୍କୁ ହତା ଭିତରେ ଥିବା ପୁରୁଣା ଘରକୁ ନେଇ ଆସିବାକୁ । କିନ୍ତୁ ସେ ସମୟକୁ ବ୍ରହ୍ମବିଦ୍ୟା ସମିତିର ଆନ୍ତର୍ଜାତିକ ସଭାପତି ଶ୍ରୀମତୀ ଆନି ବେସାନ୍ତ ବିଦେଶରେ । ତାଙ୍କ ବିନା ଅନୁମତିରେ ନାରାୟଣିୟାଙ୍କ ଘର ବଦଳି ସମ୍ବନ୍ଧରେ ଲେଡ୍‌ବିଟର୍ କୌଣସି ନିଷ୍ପତ୍ତି ନେବା ସମ୍ଭବ ନ ଥିଲା । ତେଣୁ ଲେଡ୍‌ବିଟର ଆନି ବେସାନ୍ତଙ୍କୁ ଚିଠି ଲେଖି ଏ ବିଷୟରେ ତାଙ୍କ ଅନୁମତି ଲୋଡ଼ିଲେ ଯେ ମୁଖ୍ୟ କାର୍ଯ୍ୟାଳୟର ଅଳ୍ପ ଦୂରରେ ଥିବା ପୁରୁଣା ଘରଟାରେ ନାରାୟଣିୟାଙ୍କୁ ରହିବା ପାଇଁ ଅନୁମତି ଦେବା ଦରକାର । ଆହୁରି ମଧ୍ୟ ସେ ଜଣେଇଲେ ଯେ ଦିବ୍ୟ ଦୃଷ୍ଟି ବଳରେ ଅନୁଧ୍ୟାନ କରି ଜଣା ଯାଇଛି ଯେ ସେହି ପିଲାଙ୍କ ଭିତରୁ ଜଣକର ଅତୀତ ଜନ୍ମଗୁଡ଼ିକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ଏମିତି କି ହ୍ୟୁବର୍ଟର ଅତୀତ ଜନ୍ମ-ଗୁଡ଼ିକ ଅପେକ୍ଷା ମଧ୍ୟ ଅଧିକ ଉନ୍ନତ ଧରଣର । ଆହୁରି ସେ ଲେଖି-ଥିଲେ, ଖାଲି ଦୈବାତ୍ ଯେ ସେ ପିଲାଟି ଆଡ଼ିୟାର ଆସି ଯାଇଛି ତା ନୁହଁ—ତାକୁ ଖାସ୍ ଏଠିକି ଆଣିବା ପାଇଁ ହିଁ ଏ ତ ନାରାୟଣିୟାଙ୍କୁ ଆସିବାକୁ ପଡ଼ିଛି ।

କୃଷ୍ଣମୂର୍ତ୍ତିଙ୍କର ବିଗତ ଜନ୍ମ ଗୁଡ଼ିକ ଅନୁସନ୍ଧାନ କରି ସେଥିରେ ଲେଡ୍‌ବିଟର ତାଙ୍କୁ ଆଲ୍‌କିଓନ (Alcyone) ବୋଲି ଉଲ୍ଲେଖ କରି-ଥିଲେ ।

ତାଙ୍କର ବିଗତ ଅଠ ଗୃଳଶ ଗୋଟି ଜନ୍ମକୁ ଅନୁସନ୍ଧାନ କରି, ତାହାକୁ ସେ "ଦି ଥିଓସଫିଷ୍ଟ"ର ୧୯୧୦ ଏପ୍ରିଲ ସଂଖ୍ୟାରେ "ରେଣ୍ଟ୍ସ୍ ଇନ୍ ଦି ଭେଲ୍ ଅଫ୍ ଟାଇମ୍" ଶିରୋନାମାରେ ପ୍ରକାଶ କରାଉଥିଲେ ।

କୃଷ୍ଣମୂର୍ତ୍ତି ଓ ନିତ୍ୟାନନ୍ଦଙ୍କ ଉପରେ ସ୍କୁଲ୍‌ରେ ଯୋଉ ଅମାନୁଷିକ ବେତ ମାଡ଼ ହେଉଥିଲା, ତା ଦ୍ୱାରା ସେମାନଙ୍କ କାମ-ଶରୀର ଏକବାରେ ବିକ୍ଷୁବ୍ଧ ହୋଇ ପଡୁଥିଲା । ଏତକ ଦେଖିବା ମାତ୍ରେ ଲେଡ୍‌ବିଟର ଗୋଟିଏ ଉପାୟ ପାଞ୍ଚିଲେ—ପିଲା ଯୋଡ଼ଙ୍କୁ ସେହି ସ୍କୁଲରୁ ନାଆଁ କଟାଇ ନେଇ ଆସିବାକୁ ସେ ନାରାୟଣିୟାଙ୍କୁ ମତାଇ-ବାରେ ଲାଗିଲେ । ଏହା ମୂଳରେ ଲେଡ୍‌ବିଟରଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା—କେମିତି ସେମାନଙ୍କ ଭିତରୁ ଆଗ ଭୟଟାକୁ ସେ ମୂଳ ପୋଛି କରି ଦେବେ । କାରଣ ଭିତରେ ଭୟ ରହିଥିବାଯାଏ କେବେ ଆଧ୍ୟାତ୍ମିକ ଉନ୍ନତି ଘଟି ପାରିବ ନାହିଁ । ନାରାୟଣିୟାଙ୍କୁ ସେ ପ୍ରତିଶ୍ରୁତି ଦେଲେ ଯେ ଆନି ବେସାନ୍ତ ବିଦେଶରୁ ଆଡ଼ୟାର ଫେରିବା ପର୍ଯ୍ୟନ୍ତ ସେ ନିଜେ ଓ ତାଙ୍କ ସହକର୍ମୀମାନେ ଏଇ ପିଲା ଦୁଇଟିଙ୍କୁ ବିଭିନ୍ନ ବିଷୟରେ ଶିକ୍ଷା ଦେଉଥିବେ ଏବଂ ବିଦେଶରୁ ଫେରିବା ପରେ ଶ୍ରୀମତୀ ବେସାନ୍ତ ନିଜେ ପିଲାମାନଙ୍କୁ ଦେଖା ଶୁଣା କରିବେ; ଯାହା ସେମାନଙ୍କ ପାଇଁ ହିତକର ସେ ସବୁ ସେ ନିଷ୍ପତ୍ତି କରିବେ, ଏମିତି କି ପିଲା ଦିହିଙ୍କର ଇଂଲଣ୍ଡରେ ପଢ଼ିବାର ବ୍ୟବସ୍ଥା ମଧ୍ୟ କରିଦେବେ । ନାରାୟଣିୟା ତାଙ୍କର ଏହି ପ୍ରସ୍ତାବରେ ରାଜି ହେଲେ ଏବଂ ତା ପରଠୁ ଲେଡ୍‌ବିଟର ଓ ତାଙ୍କର ସହକର୍ମୀମାନେ ପିଲା ଦୁଇଟିଙ୍କୁ ବିଭିନ୍ନ ବିଷୟ ଶିକ୍ଷା ଦେବାରେ ଲାଗି ପଡ଼ିଲେ ।

ପଢ଼ା ସାଙ୍ଗକୁ ପିଲାମାନଙ୍କର ସାଧାରଣ ସ୍ୱାସ୍ଥ୍ୟ ରକ୍ଷା ପ୍ରତି ମଧ୍ୟ ଦୃଷ୍ଟି ଦିଆଗଲା । ମୁଣ୍ଡ ବାଳ ଠିକ୍ ସାଇଜ୍ କରି କଟାଗଲା, ଦାନ୍ତ ଗୁଡ଼ିକ ଯାହା ବଙ୍କା ତେଢ଼ା ଥିଲା ଦାନ୍ତ-ଡାକ୍ତରଙ୍କ ପରାମର୍ଶ ଅନୁସାରେ ତାକୁ ସଳଖିବାକୁ ପାତିଆ ବନ୍ଧା ଗଲା, ପରିଷ୍କାର ପରିଚ୍ଛନ୍ନ ଭାବରେ ଗାଧୋଇବାର ଶିକ୍ଷା ଦିଆଗଲା । ପୁଷ୍ଟିକର ଖାଦ୍ୟ ସାଙ୍ଗକୁ ଘଣ୍ଟା ଘଣ୍ଟା

ଧରି ସାଇକଲ ଚାଳନା, ଟେନିସ୍ ଖେଳା ଓ ନଈ ପହଁରା—ସବୁ ସେମାନଙ୍କୁ କରିବାକୁ ହେଉଥିଲା । ପାଟିଟା ମେଲା ରଖିବା ଥିଲା କୃଷ୍ଣମୂର୍ତ୍ତିଙ୍କର ଗୋଟାଏ ଅଭ୍ୟାସ । ଏଇ ବଦ୍ ଅଭ୍ୟାସଟିକୁ ଚେତାବନୀ ଦେଇ ଦେଇ ସୁଧୁରା ଗଲା । ଯଦିଓ ପିଲା ଦୁଇଟି ତାଙ୍କର ସେଇ ଭଙ୍ଗା ଘରେ ବାପାଙ୍କ ପାଖରେ ଶୋଉଥିଲେ, ବାକି ସମୟତକ ସେମାନଙ୍କର ସେଣ୍ଟ୍ରାଲ ମୁଖ୍ୟ କାର୍ଯ୍ୟାଳୟ ଠାରେ ବିଭିନ୍ନ ବିଷୟ ଶିକ୍ଷା କରିବାରେ କଟୁଥିଲା । ଏତିକ ସାଙ୍ଗକୁ ତାଙ୍କର ଆଧ୍ୟାତ୍ମିକ ଉନ୍ନତି ଉପରେ ମଧ୍ୟ ପୂରା ନଜର ରଖା ଯାଇଥିଲା । ଲେଡ୍‌ବିଟର ତାଙ୍କ ପିଛରେ ଜୋର୍‌ସୋର୍‌ରେ ଲାଗି ପଡ଼ିଥିଲେ । ଫଳରେ ଅଳ୍ପ କେଇଟା ମାସ ଭିତରେ କୃଷ୍ଣମୂର୍ତ୍ତିଙ୍କ ଚେହେରା ବଦଳି ଗଲା—ଦାନ୍ତଗୁଡ଼ିକ ସଳଖି ଗଲା, ମୁଣ୍ଡ ବାଳ ଘନ ହେଇଗଲା, ଆଉ ସୁସ୍ଥତାର ଏକ ଅପୂର୍ବ ଝଲକରେ ତାଙ୍କର ସେଇ ବିଶାଳ କଳା କଳା ଆଖି ଯୋଡ଼ିକ ଉଦ୍ଭାସିତ ହେଇ ଉଠିଲା ।

ଲେଡ୍‌ବିଟର୍‌ଙ୍କ ନିଜ ଆଧ୍ୟାତ୍ମିକ ମହାଗୁରୁ କୁଥୁହୁମିଙ୍କ ହାତରେ କୃଷ୍ଣମୂର୍ତ୍ତିଙ୍କ ଆଧ୍ୟାତ୍ମିକ ଶିକ୍ଷାର ଭାର ଥିଲା । ଆଉ ପ୍ରତିଦିନ ରାତିରେ କୃଷ୍ଣମୂର୍ତ୍ତି ନିଦରେ ଶୋଇଥିବା ବେଳେ ଲେଡ଼ବିଟର ତାଙ୍କର ସୂକ୍ଷ୍ମ ଶରୀରକୁ (Astral body) ସାଥିରେ ଧରି ମହାଗୁରୁଙ୍କ ସହିତ ସାକ୍ଷାତ କରାଉ ଥିଲେ ।

ଲେଡ୍‌ବିଟର୍ ଚିଠି ଦ୍ୱାରା ଶ୍ରୀମତୀ ବେସାନ୍ତଙ୍କୁ ଜଣାଇ ଥିଲେ ଯେ ୧୯୦୯, ଅଗଷ୍ଟ ପହିଲା ଦିନ ପିଲା ଦୁଇଟି ନିଦରେ ଶୋଇଥିବା ବେଳେ, ସେ ସେମାନଙ୍କ ସୂକ୍ଷ୍ମ-ଶରୀରକୁ (Astral body) ସାଥିରେ ଧରି ମହାଗୁରୁ କୁଥୁହୁମିଙ୍କ ଘରେ ହାଜର କରାଇ ଥିଲେ, ଆଉ ମହାଗୁରୁ କୁଥୁହୁମି ଉଭୟଙ୍କୁ ତାଙ୍କ ଶିଷ୍ୟ କରିବା ପୂର୍ବରୁ ଆଗ ଶିକ୍ଷା ନବିସ ଭାବରେ ରଖିଲେ ।

ଏଇ ଶିକ୍ଷାନବିସରୁ ଉଠି ଶିଷ୍ୟ ଭାବରେ ଗୃହୀତ ହେବାକୁ ତାଙ୍କୁ ପାଞ୍ଚ ମାସ ସମୟ ଲାଗିଥିଲା । ଏଇ ପାଞ୍ଚ ମାସ ଯାକ ଲେଡ଼୍‌ବିଟର୍ ପ୍ରତିଦିନ ରାତିରେ କୃଷ୍ଣମୂର୍ତ୍ତିଙ୍କୁ ମହାଗୁରୁ କୁଥୁହୁମିଙ୍କ ପାଖରେ ପହଞ୍ଚାଉ

ଥିଲେ । ସେଠାରେ ତାଙ୍କୁ ପନ୍ଦର ମିନଟ୍ ପାଇଁ ଶିକ୍ଷା ଦିଆଯାଉଥିଲା, ଆଉ ଶିକ୍ଷା ଶେଷରେ ମହାଗୁରୁ ଯାହାସବୁ କହୁଥାନ୍ତି, ତାକୁ ହିଁ ପୁଣି ଥରେ ମନେ ରଖିଲା ଭଳି ଅଳ୍ପ କେତୋଟି ସରଳ ବାକ୍ୟରେ କହି ଦେଉଥିଲେ, ଏବଂ ପରଦିନ ସକାଳେ କୃଷ୍ଣମୂର୍ତ୍ତି ହାତରେ କାଗଜ କଲମ ଧରି ସେହି ବ୍ରହ୍ମବିଦ୍ୟା ସମିତିର ବଙ୍ଗଳା ଘରେ ବସି ମହାଗୁରୁଙ୍କ କଥାଗୁଡ଼ିକୁ ମନେ ପକାଇ ପକାଇ ଲେଖି ରଖୁଥିଲେ । ଏହି ଲେଖା-ଗୁଡ଼ିକ ପରେ "ଆଟ୍ ଦି ଫିଟ୍ ଅଫ୍ ଦି ମାଷ୍ଟର୍" ନାମକ ଏକ କ୍ଷୁଦ୍ର ପୁସ୍ତକ ରୂପେ ଆତ୍ମ ପ୍ରକାଶ କରିଥିଲା । ସତେଇଶ ଗୋଟି ଭାଷାରେ ଏହି ପୁସ୍ତକଟି ଅନୁଦିତ ହୋଇଛି; ବହିର ଚାଳିଶରୁ ଊର୍ଦ୍ଧ୍ୱ ସଂସ୍କରଣ ହୋଇଛି, ଏବେ ବି ତାର ଛପା ଚାଲିଛି । ଏଥିରେ ଲେଖକ କୃଷ୍ଣମୂର୍ତ୍ତିଙ୍କ ନାମ 'ଆଲ୍‌କିଓନ' ରହିଛି ।

ଏ ଭଳି ଶିଷ୍ୟ ଭାବରେ ଗୃହୀତ ହେବାଟା କିଛି ସହଜ କଥା ନୁହଁ । ଏଥିପାଇଁ ଲୋଡ଼ା ନିଖୁଣ ସ୍ୱାସ୍ଥ୍ୟ, ଅଖଣ୍ଡ ଶାରୀରିକ ତଥା ମାନସିକ ପବିତ୍ରତା, ନିସ୍ୱାର୍ଥପର ମନୋଭାବ, ସମସ୍ତଙ୍କ ଲାଗି ମନରେ ଅପାର ଦୟା, ସବୁ ଜୀବଜନ୍ତୁଙ୍କ ପ୍ରତି କରୁଣା, ସତ୍ୟନିଷ୍ଠତା, ଯେ କୌଣସି ପରିସ୍ଥିତି ଲାଗି ଅତୁଟ ସାହସ ଏବଂ ଏହି ଅନିତ୍ୟ ଜଗତର ସମସ୍ତ ବସ୍ତୁ ପ୍ରତି ନିର୍ଲିପ୍ତ ସହାନୁଭୂତିଶୀଳତା ।

ଆନି ବେସାନ୍ତ ଆଡ଼ିୟାର ଆସିବା ପରେ କୃଷ୍ଣମୂର୍ତ୍ତିଙ୍କ ସହିତ ତାଙ୍କର ଦେଖା ହେଲା ଏବଂ ସେ ପିଲା ଦୁଇଟିଙ୍କୁ ବ୍ରହ୍ମବିଦ୍ୟା ସମିତିର ଦୀକ୍ଷାପ୍ରାପ୍ତ ବ୍ୟକ୍ତିଙ୍କ ପାଇଁ ଉଦ୍ଦିଷ୍ଟ ବିଭାଗରେ (Esoteric Section) ସଭ୍ୟ ରୂପେ ଗ୍ରହଣ କରିନେଲେ । ଏହି ସମୟରେ ଲେଡ଼୍‌ବିଟର ସେହି ମହାଗୁରୁଙ୍କ ଠାରୁ ଗୋଟିଏ ନିର୍ଦ୍ଦେଶ ପାଇଲେ ଯେ ଏ ପିଲା ଦୁଇଟିଙ୍କର ବାପାଙ୍କୁ ଏଥର ନମ୍ରତାର ସହିତ ଦୃଢ଼ ଭାବରେ ଜଣାଇ ଦିଆ ଯିବା ଦରକାର ଯେ ସେମାନେ ଏଣିକି ତାଙ୍କ ବାପାଙ୍କର କେବଳ ନୁହନ୍ତି, ସେମାନେ ହେଉଛନ୍ତି—ସାରା ଜଗତର; ତେଣୁ ସେମାନଙ୍କର ଖାଇବା, ଗାଧୋଇବା, ଶୋଇବା ଓ ଅନ୍ୟାନ୍ୟ ବିଷୟରେ ଯେପରି କୌଣସି ପ୍ରକାର ହସ୍ତକ୍ଷେପ ନ ଘଟେ । ମହାଗୁରୁଙ୍କ ଇଚ୍ଛା ଯେ ପିଲା ଯୋଡ଼ିକ

କିଛି ବର୍ଷ ଯାଏ ତାଙ୍କ ବାପାଙ୍କ ଠାରୁ ଅଲଗା ହୋଇ ରହିବେ, କାରଣ ଏଣିକି ତାଙ୍କ ବାପାଙ୍କ ରାଗ, ଈର୍ଷା ଜରିଆରେ ତାମସ ଶକ୍ତିଗୁଡ଼ିକ କ୍ରିଷ୍ଣମୂର୍ତ୍ତିଙ୍କ ପଥରେ ବାଧା ସୃଷ୍ଟି କରାଇବା ଲାଗି ସକ୍ରିୟ ହୋଇ ଉଠିବ ।

ଏ ସବୁ ଜାଣିବା ପରେ ଶ୍ରୀମତୀ ବେସାନ୍ତ ଯେତେବେଳେ କାର୍ଯ୍ୟରେ ବାରାଣସୀ ଗଲେ, ତାଙ୍କ ନିଜ ବଖରାଟିରେ ପିଲା ଯୋଡ଼ିଙ୍କୁ ଶୁଆଇବାର ବ୍ୟବସ୍ଥା କରିଦେଇ ଗଲେ । ଯେହେତୁ ନାରାୟଣିୟାଙ୍କ ପାଇଁ ସେହି ପରିସର ଭିତରେ ନୂଆ ଘର ଆଉ ଉପଲବ୍ଧ ହୋଇ ନ ଥିଲା, ତେଣୁ ଏହି ପ୍ରସ୍ତାବରେ ସେ ରାଜି ହୋଇଗଲେ ।

ସେତେବେଳେ କ୍ରିଷ୍ଣମୂର୍ତ୍ତିଙ୍କ ସହିତ ନିତ୍ୟାନନ୍ଦଙ୍କ ଛଡ଼ା, ଏକ-ମାତ୍ର ଵୁଡ୍‌ବର୍ଣ୍ଣଙ୍କୁ ଦେଖା ସାକ୍ଷାତ କରିବାକୁ ଅନୁମତି ମିଳିଥିଲା; କିନ୍ତୁ କ୍ରିଷ୍ଣମୂର୍ତ୍ତିଙ୍କ ସାଇକଲ ବା ଟେନିସ୍ ର୍‍ୟାକେଟ କିମ୍ବା ତାଙ୍କର ଅନ୍ୟ କୌଣସି ବ୍ୟବହାର୍ଯ୍ୟ ଜିନିଷ ଵୁଡ୍‌ବର୍ଣ୍ଣଙ୍କୁ ଛୁଇଁବାକୁ ଦିଆ ହେଉ ନ ଥିଲା । ସମ୍ଭବତଃ ଲେଡ୍‌ବିଟରେ ଵୁଡ୍‌ବର୍ଣ୍ଣଙ୍କର ଜ୍ୟୋତି ମଣ୍ଡଳରୁ ତାଙ୍କ ମନରେ ଥିବା କ୍ରିଷ୍ଣମୂର୍ତ୍ତିଙ୍କ ପ୍ରତି ଈର୍ଷା ଭାବଟାକୁ ଧରି ନେଇ ପାରୁ-ଥିଲେ । କାରଣ ଏଇଟା ଜଣା କଥା ଯେ ଜଡ଼ ଜିନିଷଗୁଡ଼ିକ ଏମିତି ସବୁ ଛୁଆଁ ଛୁଇଁ ଦ୍ୱାରା ଭଲ ଓ ମନ୍ଦ ଗୁଣକୁ ନିଜ ଭିତରକୁ ଟାଣି ଆଣି ଥାଏ । ସୁତରାଂ ଵୁଡ୍‌ବର୍ଣ୍ଣଙ୍କ ଭିତରୁ ବାହାରୁଥିବା ଈର୍ଷା କାଳେ କ୍ରିଷ୍ଣମୂର୍ତ୍ତିଙ୍କ ର୍‍ୟାକେଟ ବା ସାଇକଲ ଜରିଆରେ କ୍ରିଷ୍ଣମୂର୍ତ୍ତିଙ୍କ କାୟା କଳୁଷିତ କରିବ—ସେ ଆଶଙ୍କାଟା ବରାବର ରହୁଥିଲା ।

ଏଣେ ନାରାୟଣିୟା ଓ ଲେଡ୍‌ବିଟରଙ୍କ ଭିତରେ ପ୍ରାୟ ସଦାବେଳେ ଗୋଳମାଳ ଲାଗି ରହୁଥିଲା । ଲେଡ୍‌ବିଟରଙ୍କୁ ସେ ଆଦୌ ବିଶ୍ୱାସ କରି ପାରୁ ନ ଥିଲେ । କାରଣ ଏହାର କିଛି ବର୍ଷ ଆଗରୁ ଲେଡ୍‌ବିଟରଙ୍କ ନାମରେ ଚରିତ୍ର ଗତ ଅପବାଦ ଉଠିଥିଲା, ଆଉ ସେହି ଅଭିଯୋଗ ମଧ୍ୟ ଗୁରୁତର ଆକାର ଧାରଣ କରିଥିଲା । ସାନ ସାନ ପିଲାମାନଙ୍କୁ ସେ ଯୌନ ବ୍ୟଭିଚାର ଶିକ୍ଷା ଦେଉଛନ୍ତି ବୋଲି ତାଙ୍କ ଉପରେ ଦୋଷାରୋପ

ହୋଇଥିଲା । ସେ ନିଜେ କିନ୍ତୁ ଏ ଭଳି ଦୋଷାରୋପକୁ ବରାବର ଅତି ଶାନ୍ତ ଭାବରେ ଖଣ୍ଡନ କରି ଆସୁଥିଲେ । ତଥାପି ଅନେକ ବାପ ମା, ଆପଣା ପିଲାଙ୍କୁ ତାଙ୍କ ଜିମା ଛାଡ଼ିବାକୁ ନିରାପଦ ମନେ କରୁ ନ ଥିଲେ । ହେଲେ ଶ୍ରୀମତୀ ବେସାନ୍ତଙ୍କ ମନରେ ଏଭଳି ଅପବାଦର ସତ୍ୟତା ଉପରେ ସନ୍ଦେହ ଥିଲା । କାରଣ ସେ ଜାଣିଥିଲେ ଅଖଣ୍ଡ ଚରିତ୍ରବତ୍ତା ବିନା କେହି ମହାଗୁରୁଙ୍କର ଶିଷ୍ୟ ହୋଇ ପାରନ୍ତି ନାହିଁ; ସବୁଠୁ ଆଗେ ଦରକାର ସେଇଟା । ଆଉ ଯେହେତୁ ଲେଡ୍‌ବିଟରେ ମହାଗୁରୁ କୁଟ୍‌-ହୁମିଙ୍କର ଅତି ପ୍ରିୟ ଶିଷ୍ୟ ଥିଲେ, ତାଙ୍କ ନାଆଁରେ ଏପରି ଅପବାଦ ଶ୍ରୀମତୀ ବେସାନ୍ତଙ୍କ ମନରେ ଦ୍ୱିଧା ଜାତ କରାଉଥିଲା । ପରେ କିନ୍ତୁ ସମସ୍ତ ଅଭିଯୋଗକୁ ସେ ନିଜେ ଅନୁସନ୍ଧାନ କରି ଥିଲେ ଓ ଲେଡ୍‌-ବିଟରଙ୍କ ପ୍ରତି ତାଙ୍କର ପୂର୍ବ ଶ୍ରଦ୍ଧା ପୁଣି ଫେରି ଆସିଥିଲା ।

ନାରାୟଣିୟାଙ୍କ ଆଖିରେ ଯିନା ଶ୍ରୀମତୀ ବେସାନ୍ତ ଗଭୀର ଭକ୍ତି ଓ ସମ୍ମାନର ପାତ୍ରୀ ଥିଲେ, ଲେଡ୍‌ବିଟରଙ୍କୁ ସେ କିନ୍ତୁ ଆଦୌ ବିଶ୍ୱାସ କରି ପାରୁ ନ ଥିଲେ । ଏଇ ସମୟରେ ନାରାୟଣିୟା ଯେତେବେଳେ ବ୍ରହ୍ମ-ବିଦ୍ୟା ସମ୍ମେଳନୀରେ ଯୋଗ ଦେବା ପାଇଁ ବାରାଣାସୀ ଗଲେ, ସେଠି ଶ୍ରୀମତୀ ବେସାନ୍ତ ତାଙ୍କୁ କ୍ରିଷ୍ଣମୂର୍ତ୍ତିଙ୍କ ସମ୍ବନ୍ଧରେ ପୂର୍ବ ଜନଶ୍ରୁତିର ଗୁରୁତ୍ୱ ଭଲ କରି ବୁଝାଇ ଦେଲେ । ଲେଡ୍‌ବିଟରଙ୍କ ବର୍ଣ୍ଣନା ମୁତାବକ ପିଲା ଦିହିଙ୍କ ପାଇଁ ମହାଗୁରୁମାନଙ୍କର ପ୍ରତ୍ୟେକଟି ଆଦେଶ ଯେମିତି ଅକ୍ଷରେ ଅକ୍ଷରେ ପାଳନ କରାଯାଏ, ତାର ଦାୟିତ୍ୱ ସେମାନଙ୍କ ଉପରେ ରହିଛି ବୋଲି ଜଣାଇ ଦେଲେ । ଏ ସବୁ ଶୁଣିବା ପରେ ନାରାୟଣିୟା ବୁଝିଗଲେ ।

ହେଲେ କଣ ହେବ ନାରାୟଣିୟା ଓ ଲେଡ୍‌ବିଟର୍‌ଙ୍କ ଭିତରେ ସେଇ ଗୋଳମାଳ ଆଉ ତୁଟିଲା ନାହିଁ । ଶ୍ରୀମତୀ ବେସାନ୍ତ କିନ୍ତୁ ଅତି ବିଚକ୍ଷଣ ଭାବରେ ନାରାୟଣିୟାଙ୍କ ସହିତ କାରବାର କରୁଥିଲେ । ଏଇ ଠେଲା ପେଲା ଦେଖି ସେ ଶେଷକୁ ପିଲା ଦୁଇଟିଙ୍କର ଅଭିଭାବକତ୍ୱ ନିଜ ହାତକୁ ନେଇ ଆସିବାକୁ ଚାହିଁଲେ । ଏଥିପାଇଁ

କାଗଜ ପତ୍ରରେ ଲେଖାପଢ଼ା ହେଲା, ଆଉ ନାରାୟଣିୟା ସେଥିରେ ଦସ୍ତଖତ ଦେଲେ । ଫଳରେ ସବୁ ଶାନ୍ତ ପଡ଼ିଗଲା ।

× × × ×

କ୍ରିଷ୍ଣମୂର୍ତ୍ତିଙ୍କର ପ୍ରଥମ ଦୀକ୍ଷା ଗ୍ରହଣ ତାଙ୍କ ସୂକ୍ଷ୍ମ ଶରୀରରେ ଘଟିଥିଲା । ଅନ୍ୟ ମାନଙ୍କ ପ୍ରତି ସର୍ବଦା ତାଙ୍କ ଅନ୍ତରରେ ଯୋଉ ଅହେତୁକ ଶ୍ରଦ୍ଧା ଝରୁଥିଲା, ସେଇଟା ହିଁ ତାଙ୍କର ବ୍ୟବହାର, ତାଙ୍କର ଢ଼ଙ୍ଗ ଢ଼ାଙ୍ଗକୁ ଏତେ କୋମଳ ମଧୁର କରି ରଖିଥିଲା । ମାତ୍ର ଚଉଦ ବର୍ଷ ବୟସରୁ ତାଙ୍କର ଯୋଉ ବିପୁଳ ଗୁଣ-କୀର୍ତ୍ତନ କରାଗଲା, ଯୋଉ ଅସୁମାରି ଗୃହଁ କଥା ଲୋକେ ଆସି ତାଙ୍କ ଆଗରେ ଗାଉଥିଲେ, ସେ ସବୁ କିଛି ହେଲେ ତାଙ୍କ ମନରେ ଏତେ ଟିକିଏ ବି ଦାଗ ଟାଣି ପାରୁ ନ ଥିଲା । ଜୀବନର ଶେଷ ପର୍ଯ୍ୟନ୍ତ ସେ ସେମିତି ନମ୍ର, ସେମିତି ଆତ୍ମାଭି-ମାନ-ଶୂନ୍ୟ ହୋଇ ରହିଥିଲେ ।

ତା' ପରବର୍ଷ ଅର୍ଥାତ୍ ୧୯୧୧ ମସିହା, ଜାନୁୟାରୀ ୧୧ ତାରିଖରେ କ୍ରିଷ୍ଣମୂର୍ତ୍ତିଙ୍କର ଦୀକ୍ଷା ଗ୍ରହଣର ବାର୍ଷିକୀ ଉପଲକ୍ଷେ ବାରାଣାସୀ ଠାରେ ଜର୍ଜ ଅରୁଣ୍ଡେଲ୍ ନାମକ ବ୍ରହ୍ମବିଦ୍ୟାର ଜଣେ ସଭ୍ୟ "ଅର୍ଡ଼ର ଅଫ୍ ଦି ରାଇଜିଂ ସନ୍" ନାମରେ ଆଉ ଗୋଟିଏ ଅନୁଷ୍ଠାନ ଗଢ଼ି ବସିଲେ । ଏହାର ଉଦ୍ଦେଶ୍ୟ ଥିଲା—ଏଇ ଭାରତ ଭୂମିରେ ଯୋଉମାନେ ଏକ ମହାନ ଆଧ୍ୟାତ୍ମିକ ଗୁରୁଙ୍କର ଆବିର୍ଭାବରେ ବିଶ୍ୱାସ କରନ୍ତି, ସେଇମାନଙ୍କୁ ଆଣି ଏକଜୁଟ କରାଇ, ତାଙ୍କର ସାହାଯ୍ୟରେ ଅନୁକୂଳ ଜନମତ ସୃଷ୍ଟି କରାଇବା, ଯେପରି କି ପ୍ରକୃତ ସମୟ ଆସିଲାବେଳକୁ ସେଇ ଜଗତ-ଗୁରୁଙ୍କୁ ଶ୍ରଦ୍ଧା ଭକ୍ତିର ସହିତ ସମସ୍ତେ ଗ୍ରହଣ କରି ପାରିବେ । ଏହାର ଅଳ୍ପ କିଛି ମାସ ପରେ ହିଁ ଶ୍ରୀମତୀ ବେସାନ୍ତ ଓ ଲେଡ୍‌ବିଟର ଉଭୟ ଏହି ପରିକଳ୍ପନାକୁ ଅତି ଆଗ୍ରହର ସହିତ କାର୍ଯ୍ୟକାରୀ କରାଇବାକୁ ଲାଗି ପଡ଼ିଲେ; ତାର ନୂଆ ନାଆଁ ହେଲା

"ଅର୍ଡ଼ର ଅଫ୍ ଦ ରାଇଜିଂ ଷ୍ଟାର୍ ଇନ୍ ଦ ଇଷ୍ଟ୍"। କୃଷ୍ଣମୂର୍ତ୍ତି ଏହାର ସର୍ବୋଚ୍ଚ କର୍ତ୍ତା ଭାବରେ ଅଧିଷ୍ଠିତ ହେଲେ। ଏହାର ଉଦ୍ଦେଶ୍ୟ ଥିଲା ଭାବୀ ଜଗତ-ଗୁରୁଙ୍କ ଲାଗି ପଥ ପ୍ରସ୍ତୁତ କରି ରଖିବା। ଶୀଘ୍ର ଶୀଘ୍ର ଏହା ଏକ ଆନ୍ତର୍ଜାତିକ ଅନୁଷ୍ଠାନରେ ପରିଣତ ହୋଇଗଲା, ବିଭିନ୍ନ ଦେଶରେ ସଭ୍ୟ ସଂଖ୍ୟା ବଢ଼ି ଚାଲିଲା, ପ୍ରଚୁର ଜମିବାଡ଼ି, ଧନ ସମ୍ପତ୍ତି ଆସି ଠୁଳ ହେବାରେ ଲାଗିଲା।

୧୯୧୧ ମସିହା, ମାର୍ଚ୍ଚ ମାସରେ ଦୁଇ ଭାଇଙ୍କୁ ସାଥିରେ ଧରି ଶ୍ରୀମତୀ ବେସାନ୍ତ ଇଂଲଣ୍ଡ ଚାଲିଗଲେ। ସେଠାରେ ଥିବାବେଳେ ପିଲା-ମାନଙ୍କୁ ବିଭିନ୍ନ ସ୍ଥାନ ବୁଲାଇଲେ। ଏହି ରହଣି କାଳରେ କୃଷ୍ଣମୂର୍ତ୍ତି ବିଭିନ୍ନ ବ୍ରହ୍ମବିଦ୍ୟା ସଭାମାନଙ୍କରେ ବକ୍ତୃତା ଦେଇଥିଲେ। କିଛି ମାସ ପରେ ସେମାନେ ପୁଣି ଭାରତକୁ ଫେରି ଆସି ଆଡ଼ୟାରଠାରେ ଦୁଇ ମାସ ରହି, ବ୍ରହ୍ମବିଦ୍ୟା ସମ୍ମେଳନୀରେ ଯୋଗ ଦେବା ପାଇଁ ବାରାଣାସୀ ଗଲେ। ଏହି ସମ୍ମେଳନୀ ଶେଷରେ "ଅର୍ଡ଼ର ଅଫ୍ ଦ ଷ୍ଟାର୍" ଲାଗି ଡିସେମ୍ବର ୨୮ ତାରିଖକୁ ଏକ ପବିତ୍ର ଦିବସ ରୂପେ ଘୋଷଣା କରାଗଲା। କାରଣ ସେ ଦିନ ସେହି ସମ୍ମେଳନୀରେ ଉପସ୍ଥିତ ସଭ୍ୟମାନେ (ପ୍ରାୟ ଚାରିଶହ ଯାଏ ହେବେ) ଏକ ପ୍ରଚଣ୍ଡ ଶକ୍ତିର ଆଭାସ ପାଇଥିଲେ। ତାହା କୃଷ୍ଣମୂର୍ତ୍ତିଙ୍କ ଶରୀରରୁ ସ୍ପଷ୍ଟ ଭାବରେ ବିଚ୍ଛୁରିତ ହେଉଥିଲା। ହଲ୍‌ର ପ୍ରତ୍ୟେକ ବ୍ୟକ୍ତି ସେଥିରେ ଅତି ଗଭୀର ଭାବରେ ପ୍ରଭାବିତ ହୋଇ ପଡ଼ିଲେ। ଅବସ୍ଥା ଏ ଭଳି ହେଲା ଯେ ଲୋକମାନେ ଆସି ଲମ୍ବ ଲମ୍ବ ହୋଇ ତାଙ୍କ ପାଦତଳେ ପଡ଼ିବାରେ ଲାଗିଲେ। ଏପରି କି ନ୍ୟୁବର୍ଟ ଓ ତାଙ୍କ ମା' ମଧ୍ୟ କୃଷ୍ଣମୂର୍ତ୍ତିଙ୍କ ପାଦତଳେ ପଡ଼ିଥିଲେ।

ଡିସେମ୍ବର ୨୯ ତାରିଖ ଦିନ ବ୍ରହ୍ମବିଦ୍ୟା ସମିତିର ଦୀକ୍ଷାପ୍ରାପ୍ତ ବ୍ୟକ୍ତିଙ୍କ ବିଭାଗର (Esoteric Section) ଗୋଟିଏ ସଭା ବସିଲା। ସେଠାରେ ବ୍ରହ୍ମବିଦ୍ୟା ସମିତିର ସଭାପତି ଶ୍ରୀମତୀ ବେସାନ୍ତ ପ୍ରକାଶ କଲେ ଯେ ଏତେ କଥା ସ୍ୱ ଚକ୍ଷୁରେ ଦେଖିବା ପରେ ଓ ଅନୁଭବ କରିବା ପରେ କୃଷ୍ଣମୂର୍ତ୍ତିଙ୍କ ଶରୀର ଯେ ବୋଧିସତ୍ତ୍ୱଙ୍କର ଆଧାର ରୂପେ ଗୃହୀତ ହୋଇଛି ଏବଂ ଏବେ ସୁଦ୍ଧା ସେହି ବୋଧିସତ୍ତ୍ୱଙ୍କ ଅନୁସାରେ ଯେ ତାହା

ଗଡ଼ା ଚାଲିଛି—ଏଇ କଥାଟାକୁ ଏଣିକି ଆଉ ଲୁଚାଇ ରଖିଲେ ଚଳିବ ନାହିଁ ।

ଏହା ପରେ ଡ୍ୟୁବର୍ଟଙ୍କ ମାଆ, ପୁଅକୁ ଧରି ବିନା ଦ୍ୱିଧାରେ ଆମେରିକା ଫେରିଗଲେ ।

ସମ୍ମେଳନୀରେ ପ୍ରତିଦିନ କୃଷ୍ଣମୂର୍ତ୍ତିଙ୍କୁ ସମସ୍ତେ ଏ ଭଳି ସାଷ୍ଟାଙ୍ଗ ପ୍ରଣାମ କରୁଥିବାର ଦେଖି ନାରାୟଣିୟାଙ୍କୁ ଭୀଷଣ ବିରକ୍ତ ଲାଗିଥିଲା । ସେ ଭାବିଲେ ଯେ ତାଙ୍କ ପିଲାଙ୍କୁ ନେଇ ସେମାନେ ଏମିତି ଯୋଉ ଠାକୁର ବନେଇବାରେ ଲାଗିଛନ୍ତି—ଏଗୁଡ଼ାକ ତାଙ୍କୁ ସବୁ କେବଳ ଲୋକହସା କରାଇ ଛାଡ଼ିବ । ତେଣୁ ସେ ତାଙ୍କ ପିଲା ଦିହିଙ୍କୁ ଏଥିରୁ ହଟାଇ ଆଣିବାକୁ ସ୍ଥିର କଲେ ।

ଶ୍ରୀମତୀ ବେସାନ୍ତଙ୍କର ବହୁତ ଶତ୍ରୁ ଥିଲେ । କେତେକ ନୈଷ୍ଠିକ ହିନ୍ଦୁ ଓ ଇଂରେଜ-ବିରୋଧୀ ଲୋକ ଏଇ ସୁବିଧାରେ ନାରାୟଣିୟାଙ୍କୁ ଶ୍ରୀମତୀ ବେସାନ୍ତଙ୍କ ବିରୁଦ୍ଧରେ ମତାଇବାରେ ଲାଗିଲେ । ସେମାନେ କହିଲେ ଯେ ଶ୍ରୀମତୀ ବେସାନ୍ତ ପିଲାଦୁଇଟିଙ୍କର ଜାତି ନଷ୍ଟ କରିବାକୁ ବସିଛନ୍ତି, ସେମାନଙ୍କୁ ଖ୍ରୀଷ୍ଟିୟାନ୍ କରି ଦେବାକୁ ବସିଛନ୍ତି । ଏହା ସାଙ୍ଗକୁ ସେମାନେ ଲେଡ୍‌ବିଟରଙ୍କର ୧୯୦୬ ମସିହାର ସେଇ ଚରିତ୍ର ଅପବାଦ କଥାଟାକୁ ମଧ୍ୟ ଯୋଡ଼ି ତାଙ୍କୁ ଉତ୍ତେଜିଇବାରେ ଲାଗିଲେ ।

ଅଳ୍ପ ଦିନ ପରେ ୧୯୧୨ ଜାନୁୟାରୀ ମାସରେ ଶ୍ରୀମତୀ ବେସାନ୍ତ କଲିକତାରେ ଥିବାବେଳେ ନାରାୟଣିୟାଙ୍କ ଠାରୁ ଖଣ୍ଡେ ଚିଠି ପାଇଲେ । ସେଥିରେ ସେ ଧମକାଇ ଲେଖିଥିଲେ ଯେ ଏଣିକି ସେ ଶ୍ରୀମତୀ ବେସାନ୍ତଙ୍କ ଠାରୁ ତାଙ୍କର ପୁଅମାନଙ୍କର ଅଭିଭାବକତ୍ୱ କାଢ଼ି ଆଣିବା ଲାଗି କଚେରିର ଆଶ୍ରୟ ନେବେ । କାରଣ ସେ ଶୁଣିବାକୁ ପାଉଛନ୍ତି ଯେ ତାଙ୍କର ବାରମ୍ବାର ବାରଣ ସତ୍ତ୍ୱେ ତାଙ୍କ ପିଲାମାନଙ୍କ ସହିତ ଲେଡ୍‌ବିଟରଙ୍କର ଯୋଗାଯୋଗ ରହୁଛି ।

ଚିଠି ପାଇ ଶ୍ରୀମତୀ ବେସାନ୍ତ ଆଡ଼ୟାର ଆସି, ଅନ୍ୟ କେତେ ଜଣଙ୍କ ଉପସ୍ଥିତିରେ ଖୋଲି ଖୋଲି ଭାବରେ ନାରାୟଣିୟାଙ୍କୁ ପଚାରିଲେ,

ତାଙ୍କର ପ୍ରକୃତ ଇଚ୍ଛା ଓ ଉଦ୍ଦେଶ୍ୟଟା କଣ ?   କଅଣ ସେ ଚୃହାନ୍ତି ? ନାରାୟଣିୟା ଜବାବ ଦେଲେ ଯେ ତାଙ୍କ ପିଲାଙ୍କର କୌଣସି ପ୍ରକାର ସମ୍ପର୍କ—ଏମିତି କି ଚିଠି ଲେଖା ଲେଖି ମଧ୍ୟ—ଲେଡ଼୍‌ବିଟର୍‌ଙ୍କ ସହିତ ରହିବ ନାହିଁ ।   ଏଇ କଥାକୁ ଶ୍ରୀମତୀ ବେସାନ୍ତ ରାଜି ହେବା ପରେ କାଗଜ ପତ୍ରରେ ଦସ୍ତଖତ ହେଲା ଯେ ଶ୍ରୀମତୀ ବେସାନ୍ତ ପିଲା ଦୁଇଟିଙ୍କୁ ଶିକ୍ଷା ଦେବା ଲାଗି ସାଙ୍ଗରେ ବିଲାତ ନେଇଯାଇ ପାରିବେ ।

ଏ ସବୁ ଘଟଣା ଦେଖି ଶ୍ରୀମତୀ ବେସାନ୍ତ ପିଲା ଦିହିଙ୍କୁ କେମିତି ଆଗ ଭାରତ ଭୂମିରୁ ବାହାରକୁ ନେଇ ଯିବେ ବୋଲି ବ୍ୟସ୍ତ ହୋଇ ଉଠିଲେ । ତାଙ୍କର ଆଶଙ୍କା ହେଉଥିଲା କାଳେ ନାରାୟଣିୟା ପୁଣି ଥରେ ନିଜର ମତ ବଦଳାଇ ଦେବେ ।

୧୯୧୨ ମସିହା ଫେବୃୟାରୀ ମାସରେ ନାରାୟଣିୟା କୌଣସି ଗୋଟାଏ କାମରେ ସପ୍ତାହକ ପାଇଁ ଆଡ଼ୟାର ବାହାରକୁ ଯାଇଥିଲା-ବେଳେ ଶ୍ରୀମତୀ ବେସାନ୍ତ ତରବରିଆରେ ପିଲା ଦୁଇଟିଙ୍କୁ ସାଥିରେ ଧରି ବମ୍ବେ ବାହାରି ଗଲେ, ଆଉ ସମସ୍ତଙ୍କୁ କହିଦେଇ ଗଲେ ଯେ ଫେବୃୟାରୀ ୧୦ ତାରିଖରେ ସେ ସେଠାରୁ ବିଲାତ ପାଇଁ ଜାହାଜ ଧରିବେ ।   କିନ୍ତୁ ପ୍ରକୃତରେ ସେମାନେ ୩ ତାରିଖରେ ହିଁ ତାଙ୍କର ଜଳ-ଯାତ୍ରା ଆରମ୍ଭ କରିଥିଲେ ।   ୭ ତାରିଖ ଦିନ ଆନି ବେସାନ୍ତ ଭାରତ ମହା-ସାଗରରୁ ନାରାୟଣିୟାଙ୍କୁ ଚିଠି ଲେଖି ବିନା କାଳ ବିଳମ୍ବରେ ଆଡ଼ୟାର ପରିସର ଛାଡ଼ି ଦେବା ଲାଗି ନିର୍ଦ୍ଦେଶ ଦେଲେ, ଆଉ ତା ସହିତ ଏତିକି ମଧ୍ୟ ଜଣେଇ ଦେଲେ ଯେ ପିଲା ଦୁଇଟିଙ୍କୁ ସେମାନଙ୍କର ଶିକ୍ଷା ଶେଷ ହେବା ଯାଏ ଇଉରୋପରେ ହିଁ ରଖିବାକୁ ସେ ମନସ୍ଥ କରିଛନ୍ତି ।

ଏ କଥା ଶୁଣି ନାରାୟଣିୟା ଜଳି ଉଠିଲେ ।   ସେ ପୁଣି ପିଲା-ମାନଙ୍କୁ ନିଜର ତତ୍ତ୍ୱାବଧାନକୁ ନେଇ ଆସିବାକୁ ଚାହିଁଲେ, ଆଉ ସାଙ୍ଗେ ସାଙ୍ଗେ ଶ୍ରୀମତୀ ବେସାନ୍ତଙ୍କ ବିରୁଦ୍ଧରେ ମାଡ଼୍ରାସ ହାଇକୋର୍ଟରେ ଗୋଟିଏ ମୋକଦ୍ଦମା ଦାଏର କରିଦେଲେ ।   ସେଠାରେ ତାଙ୍କର ଡିକ୍ରୀ ହୋଇଗଲା ।   ତେଣୁ ଶ୍ରୀମତୀ ବେସାନ୍ତ ଏହି ରାୟ ବିରୁଦ୍ଧରେ ଅପିଲ୍

କଲେ । ଅପିଲ କୋର୍ଟରେ ମଧ୍ୟ ନାରାୟଣିୟା ଜିତିଲେ । ଏଥିରେ କିନ୍ତୁ ସେ ତିଳେ ମାତ୍ର ଦବି ନ ଯାଇ ଇଂଲଣ୍ଡର ନ୍ୟାୟାଳୟ ପ୍ରିଭି କାଉନ୍‌ସିଲ୍‌ରେ ଏହି ରାୟର ପୁନର୍ବିଚାର ଦାବି କଲେ । ୧୯୧୪ ମସିହା ମଇ ମାସରେ ପ୍ରିଭି କାଉନ୍‌ସିଲ୍ ମାଡ୍ରାସ୍ ହାଇକୋର୍ଟର ରାୟକୁ ଖାରଜ କରିଦେଲେ । ସେତେବେଳକୁ ଭାରତୀୟ ଆଇନ ଅନୁସାରେ କ୍ରୃଷ୍ଣମୂର୍ତ୍ତି ସାବାଳକ ହୋଇ ଯାଇଥିଲେ, ଫଳରେ ତାଙ୍କର କେହି ଅଭିଭାବକ ରହିବା ଆଉ ଦରକାର ପଡ଼ିଲା ନାହିଁ ।

ଏହାର କିଛି ବର୍ଷ ପରେ ୧୯୨୨ ମସିହାରେ କ୍ରୃଷ୍ଣମୂର୍ତ୍ତି ଓ ନିତ୍ୟାନନ୍ଦ ପୁଣି ଭାରତକୁ ଆସିଥିଲେ, ଆଉ ସେତିକିବେଳେ ତାଙ୍କ ବାପା ନାରାୟଣିୟାଙ୍କ ସହିତ ଦେଖା କରିବାକୁ ଯାଇଥିଲେ । ସେମାନେ ଯେତେବେଳେ ବାପାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ତାଙ୍କ ପାଦ ଛୁଇଁଲେ, ନାରାୟଣିୟା ସାଙ୍ଗେ ସାଙ୍ଗେ ଉଠିଯାଇ ଗୋଡଟାକୁ ଧୋଇ ପକେଇ ଆସି ଟିକିଏ ଦୂରଛଡ଼ା ହୋଇ ବସିଲେ, କାରଣ ତାଙ୍କ ମତରେ ପିଲାମାନେ ଆଉ ହିନ୍ଦୁ ନ ଥିଲେ । ସେମାନେ ଅନ୍ୟ ଜାତିର ଲୋକଙ୍କ ସହିତ ମିଶାମିଶି କରି, ଅଜାତି ହାତରେ ଖାଇ ନିଜ କାୟା ଅପବିତ୍ର କରି ପକାଇ ଥିଲେ । ଏହା ପରେ ନାରାୟଣିୟାଙ୍କ ସହିତ ତାଙ୍କର ଆଉ ଭେଟ ହୋଇ ନାହିଁ ।

# ଜ୍ଞାନ ପ୍ରାପ୍ତି

ଯୋଗ ଶାସ୍ତ୍ର କହେ ଯେ ମଣିଷର ଦେହ ଭିତରେ କେତେ ଗୁଡ଼ିଏ ଚକ୍ର ରହିଛି । ସେ ଚକ୍ରଗୁଡ଼ାକ ଆରମ୍ଭରୁ ସୁପ୍ତ ଅବସ୍ଥାରେ ଥାଏ, ଆଉ ମଣିଷର କ୍ରମବିକାଶର ବିଭିନ୍ନ ସ୍ତରରେ ବିଭିନ୍ନ ଚକ୍ର ଖୋଲି ଖୋଲି ଯାଏ, ଅର୍ଥାତ୍ ସକ୍ରିୟ ହୋଇ ଉଠେ । ମେରୁଦଣ୍ଡର ଠିକ୍ ତଳକୁ କିଛି ମୂଳାଧାର ବୋଲି ଯୋଉ ଚକ୍ରଟି—ସେଇ ହେଉଛି କୁଣ୍ଡଳିନୀର ଆସ୍ଥାନ । ସତ୍ ଜୀବନ ଯାପନ, ମହତ ଚିନ୍ତା ଓ ନିସ୍ୱାର୍ଥପର କ୍ରିୟା କଳାପ—ଏଇ ସବୁ କଥା କୁଣ୍ଡଳିନୀକୁ ଜାଗ୍ରତ କରିଦିଏ । କୁଣ୍ଡଳିନୀକୁ ଜାଗ୍ରତ କରିବାଟା ହିଁ ହେଉଛି ପ୍ରକୃତ ଯୋଗ ସାଧନାର ଏକ ଅଙ୍ଗ । କୁଣ୍ଡଳିନୀ ଜାଗ୍ରତ ହେଲେ ମଣିଷ ଠାରେ ପ୍ରଚଣ୍ଡ ବେଗରେ ଅନ୍ତର୍ନିହିତ ଶକ୍ତିର ଦୁଆରି ଖୋଲିଯାଏ ଓ ସେ ଦିବ୍ୟ ଦୃଷ୍ଟି ଲାଭ କରେ ।

ବ୍ରହ୍ମବିଦ୍ୟା ସମିତିରେ ଯୋଗ ଦେବା ପରଠାରୁ କ୍ରିଷ୍ଣମୂର୍ତ୍ତି ବରାବର ଯୋଗ ସାଧନା କରୁଥିଲେ । ତାଙ୍କ ଠାରେ ଏହି ପ୍ରକାର ଅନୁଭୂତି ୧୯୨୨ ମସିହା, ଅଗଷ୍ଟ ମାସର ମଝା ମଝି ବେଳକୁ ଘଟିଥିଲା । ସେତେବେଳକୁ ସେ ଆମେରିକାର ଓହାଇ ଠାରେ ଥିଲେ । ଏହି ଅଗଷ୍ଟ ୧୭ ରୁ ୨୦ ତାରିଖ ଭିତରେ କ୍ରିଷ୍ଣମୂର୍ତ୍ତିଙ୍କର ତିନଦିନ ଧରି ଯୋଉ ଆଧ୍ୟାତ୍ମିକ ଅନୁଭୂତି ଲାଭ ହେଲା, ସେଇଟା ତାଙ୍କ ଠାରେ ଆମୂଳ ରୂପାନ୍ତର ଘଟାଇ ଦେଲା । ସେହି ତିନଦିନ ଯାକ ଅଧିକାଂଶ ସମୟରେ ସେ ବାହ୍ୟଜ୍ଞାନ-ଶୂନ୍ୟ ହୋଇ ରହୁଥିଲେ, ଆଉ ସଂଧ୍ୟା ହେଲେ ତାଙ୍କ ଘର ପାଖରେ ଥିବା ପିପଳ ଗଛ ତଳେ ଧ୍ୟାନ ମଗ୍ନ ରହୁ ଥିଲେ । ଅନ୍ୟମାନେ ଏ ବିଷୟରେ ଖୁବ୍ ସଚେତ ଥିଲେ, କାରଣ ଏ ଭଳି ତୀବ୍ର ଯନ୍ତ୍ରଣାଦାୟକ ପ୍ରକ୍ରିୟା ଚାଲିଥିବାବେଳେ ସେମାନେ ତାଙ୍କୁ ଖାଲି

ମାରବରେ ଲକ୍ଷ୍ୟ କର ଦେଖିବା ଛଡ଼ା ଆଉ କଛି ସାହାଯ୍ୟ କର ପାରୁ ନ ଥିଲେ ।

ଏହି ତନ ଦନର ବବରଣୀରେ କୃଷ୍ଣମୂର୍ତ୍ତି ଲେଖିଛନ୍ତି—

× × × "ସେ ଦନ ମୋ ଭତରେ ଏକ 'ଅସହ୍ୟ ଯନ୍ତ୍ରଣା ଆରମ୍ଭ ହୋଇଗଲା, ଆଉ ସେ ଯନ୍ତ୍ରଣା କମିବା ବଦଳରେ ଏମିତି ବଢ଼ି ବଢ଼ି ଚାଲିଲା ଯେ ମୋର ପ୍ରାୟ ଚେତା ରହିଲା ନାହିଁ । ତା ସତ୍ତ୍ୱେ ମୋ ଚାରପଟେ ଯାହା ସବୁ ଘଟୁଥାଏ, ତାକୁ ମୁଁ ପୂରା ଜାଣି ପାରୁଥାଏ । ୧୭ ତାରଖ ଦନ ମୁଁ ଏଇ ଭଳ ଅବସ୍ଥାରେ ଥିବାବେଳେ, ମୋର ଏକ ବଚତ୍ର ଅନୁଭୂତ ହେଲା । ସେତକବେଳେ ଗୋଟିଏ ଲୋକ ରାସ୍ତା ମରାମତ କରୁଥିଲା; ସେଇଲୋକ ହେଉଛି ମୁଁ ନଜେ; ତା ହାତର ସେଇ ଗଇଁତଟା ବ ମୁଁ ; ଯୋଉ ପଥର ଖଣ୍ଡକ ସେ ଭାଙ୍ଗୁଥିଲା—ସେଇଟା ବ ମୋର ଏକ ଅଂଶ; ଘାସର ସୁକୁମାର ପତ୍ରଟି—ସେ ବ ମୁଁ , ଆଉ ସେଇ ଲୋକ ପାଖର ଗଛଟି ବ ନଜେ ମୁଁ । ସେଇ ରାସ୍ତା ମରାମତବାଲା ଯାହା ଯେମିତି ଅନୁଭବ କରୁଥିଲା, ଯାହା ସବୁ ଚନ୍ତା କରୁଥିଲା, ମୁଁ ବ ସେଇଆ ଅନୁଭବ କରୁଥିଲି, ଚନ୍ତା କରୁଥିଲି; ଆଉ ସେଇ ଝିର ଝିର ପବନ ଗଛ ଭତର ଦେଇ ବହିଗଲା ବେଳେ, ମୁଁ ତାକୁ ସ୍ପଷ୍ଟ ଅନୁଭବ କର ପାରୁଥିଲି; ପୁଣି ଘାସର ପତ୍ର ଉପରେ ସେଇ ଯୋଉ ଟିକ ପିମ୍ପୁଡ଼ିଟି—ତାକୁ ବ ମୋର ଭତରେ ପାଇଲି । ଯେତେକ ଚଢ଼େଇ, ରାସ୍ତାର ଧୂଳି, ସେଇ କୋଳାହଳ—ଏ ସବୁଯାକ ମୋର ଭତରେ ହିଁ ଅନ୍ତର୍ଭୁକ୍ତ ରହିଥିଲା । ଠିକ୍ ସେତକବେଳେ କଛି ଦୂରରେ ଗୋଟିଏ ମଟର ଗାଡ଼ି ସେ ବାଟ ଦେଇ ଯାଉଥିଲା; ମୁଁ ଥିଲି ସେଇ ଗାଡ଼ିର ଚାଳକ, ସେଇ ଇଞ୍ଜିନ, ଆଉ ସେଇ ଗାଡ଼ିର ଯେତେକ ଚକା; ସେ ଗାଡ଼ି ମୋ ପାଖରୁ ଯେମିତି ଦୂରେଇ ଗଲା, ମୁଁ ବ ମୋ ନଜ ପାଖରୁ ଦୂରେଇ ଯିବାରେ ଲାଗିଲି । ପ୍ରତ୍ୟେକଟି ବସ୍ତୁ ଭତରେ ମୁଁ ଥିଲି କମ୍ବା ତା ପରବର୍ତ୍ତେ ପ୍ରତ୍ୟେକ ବସ୍ତୁ —ଜଡ଼ ଓ ଜୀବନ୍ତ, ସେଇ ପର୍ବତ, କ୍ଷୁଦ୍ର କୀଟ ଠାରୁ ଆରମ୍ଭ କର ନଶ୍ୱାସ ପ୍ରଶ୍ୱାସ ଚାଲୁଥିବା ସମସ୍ତ ଜନଷ—ମୋ'ର ଭତରେ ହିଁ ଥିଲା । ସାରା ଦନଟା ମୁଁ ଏହି ଆନନ୍ଦ ଦାୟକ ଅବସ୍ଥାରେ ଥିଲି ।"...

ଆଉ ଥରେ ।

× × × "ଭୀଷଣ ଯନ୍ତ୍ରଣା ହେଉଥାଏ । ସଂଧ୍ୟାବେଳେ ପୁଣି ସେଇ ପିପଲ୍ ଗଛ ତଳେ ପଦ୍ମାସନରେ ବସିଲି । ଏମିତି ସେଠି କିଛି ସମୟ ବସିବା ପରେ ମତେ ଜଣାଗଲା ଯେମିତି ମୁଁ ମୋ ଦେହ ଛାଡ଼ି ବାହାରି ଆସୁଛି । ମୁଁ ଦେଖିଲି ସେଇ ପିପଲ୍ ଗଛର କଅଁଳ ପତ୍ରମାଳ ତଳେ ମୁଁ ବସିଛି । ପୂର୍ବ ଦିଗକୁ ମୋ ମୁହଁ ଥିଲା । ମୋର ସାମନାରେ ମୋ ଦେହଟା ରହିଥିଲା, ମୁଣ୍ଡ ଉପରେ ନିର୍ମଳ ତାରଟିଏ ଝଟକୁ ଥିଲା । ତା' ପରେ ମୁଁ ବୁଦ୍ଧଦେବଙ୍କର ସ୍ପନ୍ଦନ ନିଜ ଠାରେ ଅନୁଭବ କଲି; ମହାମୁନି ମୈତ୍ରେୟ ଓ ମହାଗୁରୁ କୁଥୁହୁମିଙ୍କର ଦର୍ଶନ ପାଇଲି । ସେ କି ଆନନ୍ଦ, ସେ କି ପ୍ରଶାନ୍ତି ! ସବୁ ଅତି ଶାନ୍ତିମୟ ଜଣାଗଲା । ମୋ ଦେହଟାକୁ ମୁଁ ସେମିତି ଦେଖି ପାରୁଥାଏ, ଆଉ ତା'ର ପାଖେ ପାଖେ ଘୂରି ବୁଲୁଥାଏ । ହାଉଆରେ, ପୁଣି ମୋ ଅନ୍ତର ଭିତରେ କି ନିବିଡ଼ ପ୍ରଶାନ୍ତି ମୁଁ ଅନୁଭବ କରୁଥାଏ—ଠିକ୍ ଗୋଟିଏ ଅତଳସ୍ପର୍ଶ ହ୍ରଦର ତଳଭାଗ ଭଳି ସେ ପ୍ରଶାନ୍ତି । ମୁଁ ଅନୁଭବ କଲି ଯେ ଠିକ୍ ସେହି ହ୍ରଦଟି ଭଳି ଏ ଦେହ ତାର ମନ ଓ ଆବେଗ ଉଚ୍ଛ୍ୱାସ ସମେତ, କେବଳ ବାହାରେ ବାହାରେ ହିଁ ଆଲୋଡ଼ନ ସୃଷ୍ଟି କରିଇ ପାରେ, କିନ୍ତୁ ଏ ଅନ୍ତରାତ୍ମାକୁ ସେ ସବୁ ଏବେ ଟିକିଏ ବି ଆଲୋଡ଼ିତ କରିଇ ପାରିବ ନାହିଁ । ସେହି ସବୁ ସୁମହାନ ପରମ ସନ୍ଥ ମୋ ପାଖରେ କିଛି ସମୟ ରହି ପୁଣି ଚାଲିଗଲେ । ଆହା ! ସେ କି ଆନନ୍ଦ ! ମୁଁ ଯେ ତାଙ୍କୁ ଦର୍ଶନ କରି ପାରିଲି ! ଆଉ ମୋ ପାଖରେ କିଛି ହେଲେ ଆଗ ପରି ହୋଇ ରହିବ ନାହିଁ, ଜୀବନ-ଝରଣର ଉତ୍ପତ୍ତି ସ୍ଥଳରୁ ମୁଁ ଯେ ନିର୍ମଳ ଜଳ ଆକଣ୍ଠ ପାନ କରି ମୋର ତୃଷା ମେଣ୍ଟାଇ ପାରିଛି । ଆଉ ସେ ତୃଷା କେବେ ମୋ ଠାରେ ଦେଖା ଦେବ ନାହିଁ, କେବେ ଆଉ ମୁଁ ସେ ଘନ ଅନ୍ଧାର ଭିତରେ ହଜିଯିବ ନାହିଁ, ସେହି ଅମର ଜ୍ୟୋତିର ଦର୍ଶନ ଯେ ମୁଁ ଲାଭ କରି ପାରିଛି । ସମସ୍ତ ଦୁଃଖ ଓ ଯନ୍ତ୍ରଣାକୁ ଆରୋଗ୍ୟ କରୁଥିବା ଅପାର କରୁଣାର ସ୍ପର୍ଶ ଯେ ମୁଁ ପାଇ ପାରିଛି; ମୋ ନିଜ ପାଇଁ ନୁହେଁ—ଜଗତ ପାଇଁ ! ପର୍ବତ ଶିଖରରେ ଠିଆ ହୋଇ ମୁଁ ଯେ ସେହି ସୁମହାନ ପରମ

ସତ୍ତ୍ୱ ଆଜି ଲୁପ୍ତ ହୋଇଛି, ଆଉ ସେ ଘୋର ଅନ୍ଧାର ଭିତରେ କେବେ-ହେଲେ ମୁଁ ବୁଡ଼ି ରହିବ ନାହିଁ, ସେହି ମହିମାମୟ ଦୁଃଖ-ତାପ-ହାରୀ ଜ୍ୟୋତିର ଦର୍ଶନ ଯେ ମୁଁ ଲାଭ କରିଛି। ସତ୍ୟର ନିର୍ଝର ଆଜି ମୋ ଆଗରେ ଖୋଲି ଯାଇଛି, ଆଉ ଅନ୍ଧକାର କାହିଁ ଉଭେଇ ଯାଇଛି। ପ୍ରେମ ତାର ସମସ୍ତ ଗୌରବରେ ମଣ୍ଡିତ ହୋଇ ମୋ ହୃଦୟକୁ ଉଜ୍ଜ୍ୱଳ କରି ଦେଇଛି; ମୋ ହୃଦୟ ଆଉ କେବେ ନିର୍ଭୁଜ ହୋଇ ପାରିବ ନାହିଁ। ପରମ ଆନନ୍ଦ ଓ ଅନନ୍ତ ସୌନ୍ଦର୍ଯ୍ୟର ଉତ୍ସରୁ ଯେ ମୁଁ ସୁଧା ପାନ କରି ପାରିଛି। ମୋ ପ୍ରାଣ ଆଜି ଅପାର ପ୍ରେମରେ ମଜ୍ଜିଆଲି।"

କ୍ରିଷ୍ଣମୂର୍ତ୍ତିଙ୍କର ଏହି ପ୍ରକାର "ପ୍ରକ୍ରିୟା" ସେଇ ଦିନଠାରୁ ଆରମ୍ଭ ହୋଇଥିଲି। "ପ୍ରକ୍ରିୟା" ଆରମ୍ଭ ହୋଇଗଲେ ଅସହ୍ୟ ଯନ୍ତ୍ରଣା ହୁଏ, ବେକ ମୁଣ୍ଡା ଓ ମେରୁଦଣ୍ଡ ମୂଳରେ ଭୀଷଣ ଜ୍ୱାଳା ହୁଏ, ଏମିତି କି ଯନ୍ତ୍ରଣାରେ ସେ ବେଳେବେଳେ ଗଅଁ ଗଅଁ ଚିତ୍କାର କରନ୍ତି। କେଉଁ ଅବସ୍ଥାରେ ଯେ ଏହି "ପ୍ରକ୍ରିୟା" ଆରମ୍ଭ ହୁଏ, ତାର କିଛି ଠିକ୍ ଠିକଣା ନ ଥାଏ କିନ୍ତୁ ସଦାବେଳେ ସେଇ ଯନ୍ତ୍ରଣା, ସେଇ କଷ୍ଟ।

× × × ×

ଏଥି ଭିତରେ ନିତ୍ୟାନନ୍ଦଙ୍କର ଦେହ ବାରମ୍ବାର ଅସୁସ୍ଥ ହେବାରେ ଲାଗିଲି। ଡାକ୍ତରମାନେ ଯଦିବା ତାଙ୍କ ସ୍ୱାସ୍ଥ୍ୟ ବିଷୟରେ ସେମିତି କିଛି ଆଶାବାଣୀ ନଥିଲେ, କିନ୍ତୁ ସେ ଯେ ମରିଯାଇ ପାରନ୍ତି—ଏକଥା କାହାରି ମନରେ କେବେ ତର୍କ ମାରି ନଥିଲି। ବିଶେଷ କରି କ୍ରିଷ୍ଣମୂର୍ତ୍ତି ତାଙ୍କୁ ଏତେ ବେଶୀ ଭଲପାଉ ଥିଲେ ଯେ ନିତ୍ୟାନନ୍ଦଙ୍କ ବିନା କ୍ରିଷ୍ଣମୂର୍ତ୍ତିଙ୍କର ସେହି "ବିଶେଷ କାର୍ଯ୍ୟ" ଅସମ୍ପୂର୍ଣ୍ଣ ରହିଯିବ ବୋଲି ସମସ୍ତଙ୍କର ଗୋଟାଏ ଧାରଣା ହୋଇ ଯାଇଥିଲି।

କ୍ରିଷ୍ଣମୂର୍ତ୍ତିଙ୍କର ସେତେବେଳେ ଭାରତ ଆସିବାର ଥାଏ। ୧୯୨୫, ନଭେମ୍ବର ୮ ତାରିଖରେ ସେ ଜାହାଜ ଧରିବା ପରେ ନିତ୍ୟା-ନନ୍ଦଙ୍କର ଦେହ ହଠାତ୍ ବେଶୀ ଖରାପ ହୋଇ ପଡ଼ିଲି। କ୍ରିଷ୍ଣମୂର୍ତ୍ତି ମଧ୍ୟ ଏ ଖବର ପାଇଲେ କିନ୍ତୁ ମହାଗୁରୁମାନେ ତାଙ୍କୁ କେବେ ଏପରି

ଅସହାୟ କରିଦେବେ ନାହିଁ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା ।

୧୩ ନଭେମ୍ବର, ୧୯୨୫ । କୃଷ୍ଣମୂର୍ତ୍ତି ସେତେବେଳେ ଜାହା-ଜରେ । ତାଙ୍କ ସହିତ ଶ୍ରୀମତୀ ବେସାନ୍ତ, ସହଯୋଗୀ ରାଜଗୋପାଳ ଓ ଶିବ ରାଓ ମଧ୍ୟ ଭାରତ ଆସୁଥିଲେ । ନିତ୍ୟାନନ୍ଦଙ୍କର ମୃତ୍ୟୁ ଖବର ଧରି କୃଷ୍ଣମୂର୍ତ୍ତିଙ୍କ ପାଖକୁ ଗୋଟିଏ ଟେଲିଗ୍ରାମ ଆସିଲା । ଟେଲିଗ୍ରାମଟିକୁ ପଢ଼ି ଶ୍ରୀମତୀ ବେସାନ୍ତଙ୍କ ମନରେ ବହୁତ ଦୁଃଖ ହେଲା । ଏଇ ଖବରଟା ସେ ଯେତେବେଳେ କୃଷ୍ଣମୂର୍ତ୍ତିଙ୍କ ଆଗରେ ଯାଇ କହିଲେ ତାଙ୍କୁ ଗୋଟାଏ ପ୍ରଚଣ୍ଡ ଧକ୍କା ହେଲା; ଏଇ ଶ୍ରେଷ୍ଠ ଭାଇଟିକୁ ସେ ପ୍ରାଣରୁ ବଳି ଭଲ ପାଉଥିଲେ, ସେ ପୂରାପୂରି ଭାଙ୍ଗି ପଡ଼ିଲେ । ଅବଶ୍ୟ ଏହି ଘଟଣା ତାଙ୍କର ସମଗ୍ର ଜୀବନ-ଦର୍ଶନକୁ ବଦଳାଇ ଦେଇଥିଲା—ଶ୍ରୀମତୀ ବେସାନ୍ତ ଓ ଲେଡ୍‌ବିଟରଙ୍କ ଦ୍ୱାରା ରଚିତ ସେହି ଭବିଷ୍ୟତ ଉପରେ ତାଙ୍କର ଯୋଉ ଗଭୀର ଆସ୍ଥା ଥିଲା, ସେ ସବୁତକ ଏଇ ବତାସରେ କାହିଁ ଉଡ଼ିଗଲା । ଗୋଟିଏ ମାତ୍ର ନିମେଷ ଭିତରେ ଯେତେ ଯାହା-ସବୁ-ସବୁ ଯେମିତି ଭାଙ୍ଗି ଚୂରମାର୍ ହେଇଗଲା ! ତା ପର ପର ସେଇ ଯୋଉ କେତୋଟି ଦିନ, ତାହା କୃଷ୍ଣମୂର୍ତ୍ତି ତଥା ଅନ୍ୟ ଯୋଉମାନଙ୍କୁ ତାଙ୍କର ସେଇ ଜାହାଜ ଭିତର କୋଠରୀ ଉପରେ ନଜର ରଖିବାକୁ ପଡ଼ୁଥିଲା—ସେ ସମସ୍ତଙ୍କ ପକ୍ଷରେ ଅସହ୍ୟ ଯନ୍ତ୍ରଣାଦାୟକ ହେଇ ପଡ଼ିଥିଲା ।

ସେମାନେ କଲମ୍ବୋରେ ପହଞ୍ଚିଲା ବେଳକୁ ସେ ତାଙ୍କ ମନୋ-ଭାବକୁ ଭାଷାରେ କିଛି କିଛି ବ୍ୟକ୍ତ କରି ପାରିଲେଣି ।

"ଏଇ ଜଗତକୁ ନେଇ ମୋ ଭାଇ ଓ ମୁଁ ଯେଉଁ ମଧୁର ପରି-କଳ୍ପନାମାନ ଗଢ଼ିଥିଲୁ, ତାର ସମାପ୍ତି ଘଟିଗଲା । ···ଗୋଟାଏ ପୁରୁଣା ସ୍ୱପ୍ନ ସମାଧି ପାଇଗଲା, ଆଉ ନୂଆଟିଏ ଜନ୍ମ ନେଲା—ଯେମିତି ଶକ୍ତ ମାଟିକୁ ଠେଲି ପେଲି ଫୁଲ ଜନ୍ମ ନିଏ । ଏକ ନୂତନ ଅନ୍ତର୍ଦୃଷ୍ଟି ଅସ୍ତିତ୍ୱ ଲାଭ କରିବାକୁ ଯାଉଛି, ଆଉ, ଏକ ନବ ଚେତନା ଉନ୍ମୀଳିତ

ହୋଇ ଉଠୁଛି···ସେଇ ଏକା ଜୀବନର ଏକ ନୂତନ ପୁଲକ, ଏକ ନୂତନ ସ୍ପନ୍ଦନ ଅନୁଭୂତ ହେଉଛି । ଯନ୍ତ୍ରଣା ଭିତରୁ ଏକ ଅପୂର୍ବ ଶକ୍ତି ଜନ୍ମଲାଭ କରି ଶିରାରେ ଶିରାରେ ସ୍ପନ୍ଦିତ ହୋଇ ଉଠୁଛି; ଅଶାନ୍ତର ଯନ୍ତ୍ରଣା ଭିତରୁ ଜନ୍ମଲାଭ କରୁଛି ଏକ ଅଭିନବ କୋମଳତା, ନୂତନ ହୃଦୟଙ୍ଗମତା । ଅନ୍ୟମାନଙ୍କ ଯନ୍ତ୍ରଣାର ଲାଘବ ପାଇଁ, ଆଉ ତାହା ଯଦି ନିତାନ୍ତ ପକ୍ଷେ ସେମାନଙ୍କୁ ଭୋଗିବାକୁ ପଡ଼େ, ସେତକ ଯେପରି ଉଦାରତାର ସହିତ ସେମାନେ ସହି ନେଇ, ବିଶେଷ କ୍ଷତ ବିକ୍ଷତ ନ ହୋଇ ତହିଁରୁ ବାହାରି ଆସି ପାରନ୍ତି—ଏତକର ଲାଗି ପ୍ରାଣରେ ବ୍ୟାକୁଳତା ଦେଖା ଦେଉଛି । ମୋ ଆଖିରୁ ତ ଲୁହ ଝରୁଛି କିନ୍ତୁ ଅନ୍ୟମାନଙ୍କ ଜୀବନରେ ଆହା ତା' ଯେପରି ନ ଘଟୁ, ଆଉ, ଯଦି ଘଟେ ତାହା ଯେ କିଭଳି ଜିନିଷ ତା' ମୁଁ ଏବେ ବୁଝି ପାରୁଛି ।"

× × × ×

"ଏବେ ବି ମୋ ପ୍ରାଣ କାନ୍ଦି ପାରେ, କିନ୍ତୁ ତାହା ତ ମାନବିକତା । ଏବେ ଯାହା ମୁଁ ଜାଣି ପାରୁଛି, ପୂର୍ବରୁ କେବେହେଲେ ସେ ଭଳି ଜାଣି ପାରି ନଥିଲି—ମୁଁ ଏକବାରେ ସ୍ଥିର ନିଃସନ୍ଦେହ ଯେ ଜୀବନର ଅତି ଅଦ୍ଭୁତ ସୌନ୍ଦର୍ଯ୍ୟ ରହିଛି, ପ୍ରକୃତ ସୁଖ ରହିଛି ଯାହାକୁ କି କୌଣସି ପ୍ରକାର ଜାଗତିକ ଘଟଣା କେବେ ଗ୍ରାସ କରିଦେଇ ପାରିବ ନାହିଁ; ତାର ଏକ ଅଦ୍ଭୁତ ଶକ୍ତି ଅଛି, ଯୋଉ ଶକ୍ତିକୁ ଗଡ଼ନ୍ତି ଘଟଣାମାନ ତଳେ ମାଡ଼ି ନୁଆଁଇ ଦେଇ ପାରିବ ନାହିଁ; ପୁଣି ସେ ଯୋଉ ପ୍ରେମ ତାହା ଶାଶ୍ୱତ, ସଂବେଦନଶୀଳ, ଅଜେୟ ।"

୧୯୧୧ ମସିହା ଠାରୁ "ଅର୍ଡ଼ର ଅଫ୍ ଦ ଷ୍ଟାର" ପ୍ରତିବର୍ଷ ଡ଼ିସେମ୍ବର ୨୮ ତାରିଖକୁ ଏକ ପବିତ୍ର ଦିବସ ରୂପେ ପାଳି ଆସୁଥିଲେ । ସେ ବର୍ଷ ସମିତି ୧୯୨୫ ମସିହା ଡିସେମ୍ବର ୨୮ ତାରିଖ ଦିନ "ଷ୍ଟାର" ମହାସଭାର ଅଧିବେଶନ ଆରମ୍ଭ ହେଲା । ସକାଳ ଆଠଟା ସମୟରେ ବରଗଛ ତଳେ ପ୍ରଥମ ବୈଠକରେ କୃଷ୍ଣମୂର୍ତ୍ତି ଭାଷଣ ଦେଉଥିବା ବେଳେ ଗୋଟିଏ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଗଲା, ସେତେବେଳକୁ ତାଙ୍କ ଭାଷଣ ଶେଷ ହୋଇ ଆସୁଥିଲା । ସେ ଜଗତଗୁରୁଙ୍କ ବିଷୟରେ କହି ଯାଉଥିଲେ—'ସେ କେବଳ ସେହିମାନଙ୍କ ପାଖକୁ ଆସନ୍ତି, ଯୋଉ-ମାନେ ତାଙ୍କୁ ଆନ୍ତରିକ ଭାବରେ ଖୋଜନ୍ତି, ଯୋଉମାନେ ତାଙ୍କୁ କାମନା କରନ୍ତି, ଯୋଉମାନେ ଅଧୀର ଆଗ୍ରହରେ ତାଙ୍କ ପଥ ଚାହିଁ ବସିଥାନ୍ତି ...' କହୁ କହୁ ତାଙ୍କ ସ୍ୱର ପୂରାପୂରି ବଦଳିଗଲା ଓ ହଠାତ୍ ଉଚ୍ଚ ସ୍ୱରରେ, ସ୍ପଷ୍ଟ ଭାବରେ ଶୁଣାଗଲା 'ଆଉ ମୁଁ ଆସିଛି ସେଇମାନଙ୍କ ଲାଗି, ଯୋଉମାନେ ଦରଦ ସହାନୁଭୂତି ଖୋଜୁଛନ୍ତି, ଯୋଉମାନେ ସୁଖ ଚାହୁଁଛନ୍ତି, ଯୋଉମାନେ ବନ୍ଧନ-ମୁକ୍ତ ହେବାକୁ ଚାହିଁ ବସିଛନ୍ତି; ଯୋଉ-ମାନେ ସମସ୍ତ ବିଷୟରେ ସୁଖ ଆନନ୍ଦ ପାଇବାକୁ ଗଭୀର ଆଗ୍ରହରେ ଅନାଇ ବସିଛନ୍ତି । କାହାର କ୍ଷତି କରିବାକୁ ମୁଁ ଆସିନାହିଁ, ସମସ୍ତଙ୍କ ମଙ୍ଗଳ ପାଇଁ ମୁଁ ଆସିଛି, ଉଜାଡ଼ ଦେବାକୁ ନୁହେଁ—ସଜାଡ଼ ଦେବାକୁ ମୁଁ ଆସିଛି ।'

କଥା ଗୁଡ଼ାକରେ ତୃତୀୟ ପୁରୁଷରୁ ପ୍ରଥମ ପୁରୁଷକୁ ଯୋଉ ବଦଳ ଘଟିଲା, ଗଳାର ଶବ୍ଦରେ ଯୋଉ ଉଲ୍ଲେଖନୀୟ ପ୍ରଭେଦ ଦେଖା-ଦେଲା—ସେ ସବୁକୁ ସେଠାରେ ଯୋଉମାନେ ଲକ୍ଷ୍ୟ କରୁଥିଲେ, ସେମାନଙ୍କର ଦେହ ଭିତରଟା ସିର୍‌ସିରେଇ ଉଠିଲା, ରୁମ ମୂଳ ଟାଙ୍କୁରି ଗଲା ।

'ଷ୍ଟାର' ମହାସଭାର ଶେଷ ବୈଠକରେ ଏହି ବିଷୟ ନେଇ ଆନି ବେସାନ୍ତ କହିଥିଲେ ଯେ ଏଇ ୧୯୨୫, ଡିସେମ୍ବର ୨୮ ତାରିଖର ଘଟଣାଟି ସ୍ପଷ୍ଟ ଜଣାଇ ଦେଲା ଯେ କୃଷ୍ଣମୂର୍ତ୍ତିଙ୍କ ଶରୀର ବୋଧିସତ୍ତ୍ୱଙ୍କ

ଦ୍ୱାରା ଗୃହୀତ ହୋଇ ସାଉଛି···ତାଙ୍କର ଶୁଭ ଆଗମନୀର ସଙ୍କେତ ମିଳୁଛି ।···

× × × ×

ଏହାପରେ ବିଭିନ୍ନ ସଭାରେ କୃଷ୍ଣମୂର୍ତ୍ତିଙ୍କର ଭାଷଣ ଲୋକମାନଙ୍କୁ ଯେତିକ ସ୍ତମ୍ଭୀଭୂତ କଲା, କେତେ ଜଣଙ୍କୁ ସେତିକ ଈର୍ଷାପରାୟଣ କଲା, ପୁଣି ଆଉ କେତେକଙ୍କ ମନରେ ଅନେକ ପ୍ରଶ୍ନ ଜାଗ୍ରତ କରାଇଲା । ଏହାର ଉତ୍ତର ଦେବାକୁ ଯାଇ ୧୯୨୭ ମସିହାର ଗୋଟିଏ ସଭାରେ ସେ କହିଥିଲେ—

"ତମେ ବ୍ୟସ୍ତ ହୋଇ ପଡ଼ୁଛ ଜାଣିବାକୁ ଯେ ସତରେ କଣ ଜଗତ-ଗୁରୁ ବୋଲି କେହି ଜଣେ ଅଛନ୍ତି, ଯିଏ ତାଙ୍କ ନିଜକୁ କୃଷ୍ଣମୂର୍ତ୍ତି ବୋଲି ଜଣେ ବ୍ୟକ୍ତିର ଶରୀରରେ ପ୍ରକଟ କରାଇଛନ୍ତି ? କିନ୍ତୁ ଜଗତରେ କେହି ହେଲେ ଏ ପ୍ରଶ୍ନକୁ ନେଇ ଉଦ୍‌ବିଗ୍ନ ହେବେ ନାହିଁ । ତେଣୁ ମୁଁ ଯେତେବେଳେ ମୋ **ପ୍ରିୟତମ**ଙ୍କ ବିଷୟରେ କହିବି, ତମେ ମୋ ଦୃଷ୍ଟିକୋଣଟାକୁ ଧରି ପାରିବ । × × × ମୋ **ପ୍ରିୟତମ** ହେଉଛନ୍ତି—ମୁକ୍ତ ଆକାଶ, ଏଇ ଫୁଲ, ପ୍ରତ୍ୟେକ ମଣିଷ × × × ସକାଳର ଧୀର ପବନରେ ଫୁଲ ଯେମିତି ତାର ମହକ ଭରିଦିଏ, ମୁଁ ହେଉଛି ସେହିପରି । ପାଖ ଦେଇ କିଏ ଗଲା, ନ ଗଲା—ସେ ସବୁ ନେଇ କେବେ ସେ ମୁଣ୍ଡ ଖେଳାଏ ନାହିଁ··· । × × × କର୍ତ୍ତୃତ୍ୱର ଆସନରେ କିଏ ବସିଛି ବା କୃଷ୍ଣମୂର୍ତ୍ତିର ବ୍ୟକ୍ତିତ୍ୱ ଭିତରେ କାହାର ଆବିର୍ଭାବ ଘଟିଛି, ଏସବୁ ନେଇ ଅଯଥା ଚର୍ଚ୍ଚା ଆଲୋଚନା କରି ଗୁଳିବା ମୋର ଉଦ୍ଦେଶ୍ୟ ନୁହେଁ—ମୋର ଉଦ୍ଦେଶ୍ୟ ହେଲା ଜଳ ବିତରଣ କରିବା, ଯେଉଁ ଜଳ ତମରିମାନଙ୍କର ଦୁଃଖ ଶୋକ, ତମେମାନେ ଭୋଗୁଥିବା ତୁଚ୍ଛ ଅତ୍ୟାଚାରର ଉତ୍ପୀଡ଼ନ, ତମର ଅସାମର୍ଥ୍ୟ, ସଙ୍କୀର୍ଣ୍ଣତା ଆଦିକୁ ଧୋଇ ପୋଛି ସଫା କରିଦେବ, ଯେମିତି କି ତମେମାନେ ବନ୍ଧନ-ମୁକ୍ତ ହୋଇଯିବ, ତାହେଲେ ଶେଷରେ ତମେ ଯାଇ ସେହି ଅସୀମ ମହାସିନ୍ଧୁ, ଯୋଉଟି ସେଇ **ପ୍ରିୟତମ**

ଥାଆନ୍ତି—ସେଠାରେ ମିଳିତ ହୋଇ ପାରିବ । କି ଧରଣର ପାତ୍ରରେ ତୁମେ ପାଣି ନେଇ ପିଇଲ, ତାର କଣ ସତରେ କୌଣସି ଗୁରୁତ୍ୱ ଥାଏ ? ସେହି ପାଣିଟା ଯଦି ତୁମର ଶୋଷ ମେଣ୍ଟାଇ ପାରିଲା ସେଇତ ଯଥେଷ୍ଟ । ···ମୁଁ ମୋ **ପ୍ରିୟତମ**ଙ୍କ ସହିତ ଯେ ମିଶି ଯାଇଛି, ମୋର **ପ୍ରିୟତମ** ଓ ମୁଁ ମିଶି ଏଇ ପୃଥିବୀ ଉପରେ ଘୂରି ବୁଲିବୁ । ···କିଏ ସେହି **ପ୍ରିୟତମ**—ଏକଥା ପଚାରି କିଛି ଲାଭ ନାହିଁ । ବ୍ୟାଖ୍ୟା କଣ କୌଣସି କାମରେ ଆସେ ? କାରଣ ଯେ ପର୍ଯ୍ୟନ୍ତ ତୁମେ **ତାଙ୍କୁ** ପ୍ରତ୍ୟେକ ପ୍ରାଣୀ ଭିତରେ, ପ୍ରତି ଘାସର ପତ୍ରରେ, ଉତ୍ପୀଡ଼ିତ ପ୍ରତ୍ୟେକ ମଣିଷ ଭିତରେ, ଜଣ ଜଣ କରି ସମସ୍ତଙ୍କ ମଧ୍ୟରେ ଦେଖିବାକୁ ସମର୍ଥ ନ ହୋଇଛ, ସେ ପର୍ଯ୍ୟନ୍ତ ତୁମେ ସେହି **ପ୍ରିୟତମ**ଙ୍କୁ ଆଦୌ ହୃଦୟଙ୍ଗମ କରିପାରିବ ନାହିଁ ।”

× × × ×

୧୯୨୮ ମସିହାରେ ତାଙ୍କର କେତେକ ଭାଷଣ ମଧ୍ୟରୁ ଗୋଟି-କରେ ସେ ଏଇ "ଜଗତ-ଗୁରୁ" କଥାଟାକୁ ବୁଝାଇ ଦେଇଥିଲେ ।

"ମୁଁ ବିଶ୍ୱାସ କରେ ଯେ ଅନନ୍ତ **ଜୀବନ** ବୋଲି କିଛି ଗୋଟାଏ ଅଛି, ଯାହାକି ନିଜେ ସେହି **ଉତ୍ପତ୍ତିସ୍ଥଳ** ତଥା **ଅନ୍ତିମସ୍ଥଳ**, ଆଦି ଓ ଅନ୍ତ, ପୁଣି ଏହାର ଶେଷ ନାହିଁ କି ଆରମ୍ଭ ନାହିଁ । ସେହି **ଜୀବନ**ରେ ହିଁ କେବଳ ପୂର୍ଣ୍ଣତା ଥାଏ; ଆଉ ସେହି **ଜୀବନ**କୁ ଯିଏ ଭରି ଦେଇ ପାରିଲା, ତା ପାଖରେ **ସତ୍ୟ**ର ସ୍ୱୟଂ ଅକ୍ଲେଶରେ ଧରାଦିଏ । ସେ ଜୀବନ ସମସ୍ତଙ୍କ ଲାଗି ଉନ୍ମୁକ୍ତ ରହିଛି । ବୁଦ୍ଧ ଓ ଯୀଶୁ ସେହି ଜୀବନରେ ମିଶି ଯାଇଛନ୍ତି । ମୋ ଦିଗରୁ ମୁଁ ବିଚାରି କରି ଦେଖିଛି, ମୁଁ ତାହା ପାଇଛି, ସେ ଜୀବନରେ ମୁଁ ମିଶି ଯାଇଛି । **ସତ୍ୟ**ର ଯେମିତି କୌଣସି ଆକାର ପ୍ରକାର ନାହିଁ, ବନ୍ଧ ବାଡ଼ ନାହିଁ, ସେ **ଜୀବନ**ର ବି ସେମିତି କୌଣସି ରୂପ ଆକୃତି ନାହିଁ । ଆଉ ସେହି **ଜୀବନ** ସ୍ରୋତରେ ପ୍ରତ୍ୟେକଙ୍କୁ ଦିନେ ନା ଦିନେ **ମିଶିବାକୁ ପଡ଼ିବ** ।”

ଥରେ ଗୋଟିଏ ଶିବିର-ସଭାରେ ସେ କହିଥିଲେ "ବେଳ ଆସି-ଗଲା, ତୁମେ ଏଥର ନିଜକୁ ଆଉ କାହାରି ହେଲେ ଅଧୀନ କରି ରଖ ନାହିଁ ।...ମୁଁ ଆଶାକରେ, ତୁମେ କାହାରି ହେଲେ ଉପଦେଶକୁ— ସେ ଯେ କେହି ହୁଅନ୍ତୁ ପଛକେ—କେବେ କାନ ଦେବ ନାହିଁ; କେବଳ ତୁମରି ନିଜର ତାତ୍‌କ୍ଷଣିକ ଅନ୍ତର୍ଦୃଷ୍ଟି, ତୁମରି ନିଜର ବୋଧଶକ୍ତି ପ୍ରତି ଗଭୀର ଧ୍ୟାନ ଦେବ, ଆଉ ଜାଣିରଖ, ଏଥିରେ କୌଣସି ବ୍ୟାଖ୍ୟାକାରୀ ବା ମଧ୍ୟସ୍ଥିର ସ୍ଥାନ ନାହିଁ, ସେମାନଙ୍କୁ ଖୋଲାଖୋଲି ଭାବରେ ପ୍ରତ୍ୟା-ଖ୍ୟାନ କରିଦେବ ।" ✻

କେତେକ ସଭାରେ ତାଙ୍କୁ ଅନେକ ପ୍ରଶ୍ନ ପଚରା ଯାଇଥିଲା, ଯଥା—

"ଆପଣ ଯେ ଶିଷ୍ୟ ଗ୍ରହଣ କରିବାକୁ ଚାହାନ୍ତି ନାହିଁ, ଏଇଟା କଣ ସତ ?"

"ଲୋକାଚାର ଓ ଆନୁଷ୍ଠାନିକ ବିଧି ବିଧାନ ବିଷୟରେ ଆପଣ-ଙ୍କର ମତାମତ କଅଣ ?"

"କାହିଁକି ଆପଣ କହୁଛନ୍ତି ଯେ ଧର୍ମ ପଥରେ କ୍ରମୋନ୍ନତିର ସୋପାନ ବୋଲି କିଛି ହେଲେ ନାହିଁ ?"

"ଆପଣ କଣ ତ୍ରାଣକର୍ତ୍ତା ଯୀଶୁ, ପୁଣି ଅବତୀର୍ଣ୍ଣ ହେଇଛନ୍ତି ?"

କୃଷ୍ଣମୂର୍ତ୍ତି ଯାହାସବୁ ଉତ୍ତର ଦେଇଥିଲେ, ତହିଁରୁ କିଛି କିଛି ତଳେ ଦିଆଗଲା ।

"ମୁଁ ପୁଣିଥରେ କହି ରଖୁଛି ଯେ ମୋର କେହିହେଲେ ଶିଷ୍ୟ ନାହାନ୍ତି । ତୁମେମାନେ ପ୍ରତ୍ୟେକେ ହେଉଛ **ସତ୍ୟ**ର ଉପାସକ— ଅବଶ୍ୟ ତୁମେ କାହାକୁ ହେଲେ ଅନୁସରଣ ନକରି, ଯଦି କେବଳ **ସତ୍ୟ**କୁ ହିଁ ହୃଦୟଙ୍ଗମ କରି କରି ଚାଲିଥାଅ ।...**ସତ୍ୟ** ଲାଭ କରି-ବାର ଏକମାତ୍ର ସର୍ତ୍ତ ହେଉଛି, ଏଥିରେ କୌଣସି ମଧ୍ୟସ୍ଥଙ୍କୁ ନ ପୂରାଇ

✻ The Years of Awakening (1975) P. 261

ନିଜେ ସିଧା ସଳଖେ ସ୍ୱୟଂ **ସତ୍ୟ**ର ଉପାସକ ହୋଇଯିବ । ···**ସତ୍ୟ** କେବେ ମନରେ ଆଶା ଭରିଦିଏ ନାହିଁ; ଏହା କେବଳ **ବୋଧଶକ୍ତି** ଆଣିଥାଏ । ···ଅଥଚ ବ୍ୟକ୍ତିତ୍ୱ-ପୂଜାରେ ବୋଧଶକ୍ତିର ସ୍ଥାନ ହିଁ ନାହିଁ ।···ଏବେ ବି ମୁଁ ମୋର ପୂର୍ବ ମତକୁ ବଜାୟ ରଖି କହୁଛି ଯେ ଆଧ୍ୟାତ୍ମିକ ଉନ୍ନତି ଲାଗି ପୂଜା ବିଧି ବିଧାନର ଆଦୌ ଆବଶ୍ୟକତା ନାହିଁ ।···ତୁମେ ଯଦି **ସତ୍ୟ**ର ସନ୍ଧାନ ପାଇବାକୁ ଚାହୁଁଥାଅ, ତୁମକୁ ବାହାରିବାକୁ ପଡ଼ିବ, ମଣିଷର ମନ ଓ ହୃଦୟର ସୀମାବଦ୍ଧତାକୁ ଫୋପାଡ଼ି ଦେଇ, ଦୂରକୁ – ବହୁ ଦୂରକୁ ଗଲେ ଯାଇ ତାକୁ ଆବିଷ୍କାର କରି ହେବ; ସେତେବେଳେ ତୁମେ ଦେଖିବ ସେହି **ସତ୍ୟ**ଟା ତୁମରି ଭିତରେ ହିଁ ରହିଛି । ଏଇସବୁ ନାନା ମଧ୍ୟସ୍ଥ, ନାନା ଗୁରୁ, ଯେଉଁମାନେ କି ଅନିବାର୍ଯ୍ୟ ଭାବରେ **ସତ୍ୟ**କୁ କ୍ଷୁଦ୍ର କରି ପକାଇ ତା ପ୍ରତି ବିଶ୍ୱାସଘାତକ ଆଚରଣ କରି ବସନ୍ତି, ତାଙ୍କ ପାଖକୁ ଯିବା ଅପେକ୍ଷା ସ୍ୱୟଂ **ଜୀବନ**କୁ ଚରମ ଲକ୍ଷ୍ୟ ଭାବରେ, **ଜୀବନ**କୁ ସ୍ୱୟଂ ପଥ ପ୍ରଦର୍ଶକ ଭାବରେ, **ମହାଗୁରୁ** ତଥା **ଭଗବାନ୍** ଭାବରେ ଗ୍ରହଣ କରି ନେବାଟା କଣ ଯଥେଷ୍ଟ ସରଳ, ଯଥେଷ୍ଟ ସହଜ କଥା ହେବ ନାହିଁ କି ? ···ମୋ ମତରେ, ଯୋଉ ଲୋକର ପ୍ରକୃତ ବୋଧଶକ୍ତି ଅଛି, ସେ ଲୋକ କ୍ରମ ବିକାଶର ଯେ କୌଣସି ସୋପାନରେ ଥାଉ ପଛକେ, ତାର ମୁକ୍ତି ଲାଭ ଘଟିପାରେ; ତେଣୁ ତୁମେମାନେ ଯେ ସୋପାନଗୁଡ଼ାକୁ ଏତେ ଗୁରୁତ୍ୱ ଦେଉଛ, ଏ ସବୁର ଆଦୌ ଆବଶ୍ୟକତା ହିଁ ନାହିଁ । ···ଦେଖ, ପରେ ମୋ କଥା ଗୁଡ଼ାକୁ କେବେ ପ୍ରାମାଣିକ ବାକ୍ୟ କରି ଥୋଇବ ନାହିଁ । ମୁଁ ତୁମର ଆଶା-ବାଡ଼ି ହେବାକୁ ଯାଉଁ ନାହିଁ, ଏ ସବୁରେ ମୋର ଟିକିଏ ବି ସମ୍ମତି ନାହିଁ ଜାଣିବ । ତୁମର ଉପାସନା ଲାଗି ମୁଁ ଆବଦ୍ଧ ହେବାକୁ ଯାଉନାହିଁ । ଯେତେବେଳେ ତୁମେ ପର୍ବତ ପାଖର ବିଶୁଦ୍ଧ ବାୟୁକୁ ଗୋଟେ ବଖରିଟିର ଚାରି କାନ୍ଥ ଭିତରେ ଅଟକାଇ ରଖ, ତାର ବିଶୁଦ୍ଧତା ଚାଲିଯାଏ, ତାର ପ୍ରବାହ ବନ୍ଦ ହୋଇଯାଏ. ସେଇଟା ଦୂଷିତ ହୋଇପଡ଼େ । ମୁଁ ମୁକ୍ତଥିବା ହେତୁ କେବଳ, ଏହି ସତ୍ୟକୁ ଖୋଜି ପାଇଛି; ତାହା ହେଉଛି ଅସୀମ, ତାର ଆରମ୍ଭ ନାହିଁ କି ଶେଷ ନାହିଁ । ତୁମ ଦ୍ୱାରା ନିୟନ୍ତ୍ରିତ ହେବାକୁ ମୁଁ ଦେବି ନାହିଁ ।

...ଭଗବାନ ନାହାନ୍ତି— ଏକଥା ତ ମୁଁ କେତେବେଳେ ହେଲେ କହି ନାହିଁ; ମୁଁ ଖାଲି ଏତିକି କହୁଛି ଯେ ତମରି ଭିତରେ ଯିଏ ପ୍ରକଟ ହୋଇଛି, ସେଇ ହେଉଛି ଭଗବାନ...କିନ୍ତୁ ଏଣିକି ମୁଁ ଆଉ ସେ 'ଭଗବାନ' ଶବ୍ଦଟାକୁ ବ୍ୟବହାର କରିବି ନାହିଁ...ଏହାକୁ **ଜୀବନ** ବୋଲି କହିବାକୁ ମୁଁ ବେଶୀ ପସନ୍ଦ କରେ। ଅବଶ୍ୟ ଭଲ କି ମନ୍ଦ ବୋଲି କିଛି ହେଲେ କଥା ନାହିଁ। ଭଲ ହେଉଛି ସେଇ ଜିନିଷ, ଯାହାକୁ ତମେ ଭୟ କର ନାହିଁ; ମନ୍ଦ ହେଉଛି ସେଇଟା, ଯାହାକୁ ତମେ ଭୟ କରିଥାଅ। ତେଣୁ ଯଦି ତମେ ଭୟଟାକୁ ନିର୍ମୂଳ କରି ଦେଇ ପାରିଲ, ତେବେ ଆଧ୍ୟାତ୍ମିକ ଦିଗରୁ ତମେ ପରିପୂର୍ଣ୍ଣ...। ଯେତେବେଳେ ଜୀବନକୁ ତମେ ଭଲପାଇ ବସ, ଆଉ ସମସ୍ତ ବିଷୟରେ ସେହି ଭଲ ପାଇବାଟାକୁ ସାମନାରେ ରଖି — ତମ ଭୟ ଦ୍ୱାରା ନୁହେଁ, ସେହି ପ୍ରେମ ଦ୍ୱାରା ହିଁ — ତାକୁ ବିଚାର କରି ଦେଖ, ସେତେବେଳେ ନୈତିକତା ନାମକ ଏଇ ଯୋଉ ଶିଥିଳତା, ତାହା କାହିଁ ଉଭେଇ ଯିବ। ...ଜୀବନ ନେଇ ମୁଁ ଆଗ୍ରହୀ, କାରଣ ମୁଁ ହେଉଛି **ଜୀବନ**। ବନ୍ଧୁ, ମୁଁ କିଏ, ସେ ବିଷୟରେ କୌତୁହଳ ଦେଖାଇ ତମର ଲାଭ ନାହିଁ, ତମେ କେବେହେଲେ ଜାଣି ପାରିବ ନାହିଁ। ...ଯଦି ମୁଁ କହେ, ମୁଁ ହେଉଛି ନାଜରେଥ୍‌ର ଯୀଶୁ, ତେବେ ତମେ ଆଉ ଏକ ପ୍ରଭୁତ୍ୱର ଆସନ ଗଢ଼ି ବସିବ। ଯଦି ମୁଁ କହେ—ନା, ମୁଁ ତାହା ନୁହେଁ, ତେବେ ବି ତମେ ଅନ୍ୟ ଗୋଟାଏ ପ୍ରଭୁତ୍ୱକୁ ସୃଷ୍ଟି କରାଇବ। ତମ କଳ୍ପନାରେ ମୁଁ ଯିଏ ବି ହୁଏ, ତା ସହିତ **ସତ୍ୟର କିବା** ଆସେ ଯାଏ ? ତମେ ତ **ସତ୍ୟକୁ** ନେଇ ଆଗ୍ରହୀ ନୁହେଁ, ତମର ଆଗ୍ରହ ରହିଛି ସେହି **ପାତ୍ରଟି** ଉପରେ—ଯୋଉ **ପାତ୍ର** **ସତ୍ୟକୁ** ଧାରଣ କରିଛି। ପାଣି ପିଇବାକୁ ତମର ଇଚ୍ଛା ନାହିଁ—ତମର ଇଚ୍ଛା, ଯୋଉ ପାତ୍ରରେ ପାଣିଟା ରହିଛି, ସେଇ ପାତ୍ରକୁ କିଏ ଗଢ଼ିଥିଲା ତାକୁ ଖୋଜି ବାହାର କରିବ। ପାଣିଟା ନିର୍ମଳ ଥିଲେ, ତାକୁ ପିଇ ନିଅ। ମୋର କହିବା କଥା ହେଲା ଯେ ମୋ ପାଖରେ ସେହି ନିର୍ମଳ ପାଣି ମହଜୁତ ଅଛି; ମୋ ପାଖରେ ସେହି ଦୁଃଖ-ତାପ-ହାରୀ ମହୌଷଧ ଅଛି ଯୋଉଟା କି

ସବୁ ଦୋଷକୁ ନିର୍ମୂଳ କରି ପକାଇ ସମ୍ପୂର୍ଣ୍ଣ ଭାବରେ ଆରୋଗ୍ୟ କରି ଦେବ; ଆଉ ତମେ ମତେ ପଚାରୁଛ 'କିଏ, କିଏ ତମେ ?' ମୁଁ ହେଉଛି ସବୁ—କାରଣ ମୁଁ ହେଉଛି **ଜୀବନ** ।'' ✻[1]

୧୯୨୯, ଅଗଷ୍ଟ ୨ ତାରିଖରେ ହଲଣ୍ଡର ଓମ୍ମେନ୍ ଠାରେ ''ଷ୍ଟାର'' ସଂପ୍ରଦାୟର ଅଧିବେଶନ ଆରମ୍ଭ ହେଲା । ପରଦିନ ସକାଳେ ଶ୍ରୀମତୀ ବେସାନ୍ତ ଓ ତିନି ହଜାରରୁ ଅଧିକ ଷ୍ଟାର ସଭ୍ୟଙ୍କ ଉପସ୍ଥିତିରେ —ବହୁତ ଲୋକ ରେଡ଼ିଓ ଖୋଲି ମଧ୍ୟ ବସିଥିଲେ—କୃଷ୍ଣମୂର୍ତ୍ତି ''ଅର୍ଡ଼ର ଅଫ୍ ଦି ଷ୍ଟାର'' ସଂଗଠନକୁ ଭାଙ୍ଗି ଦେଇ ଗୋଟିଏ ବକ୍ତୃତା ଦେଇ-ଥିଲେ—

''ମୁଁ ଏଇ ମତ ପୋଷଣ କରେ ଯେ **ସତ୍ୟ** ହେଉଛି ଏକ ପଥ-ଶୂନ୍ୟ ରାଜ୍ୟ, ଫଳରେ କୌଣସି ପଥକୁ ଆଶ୍ରା କରି ତମେ ତା ନିକଟରେ କଦାପି ପହଞ୍ଚି ପାରିବ ନାହିଁ—କୌଣସି ଧର୍ମ ଦ୍ୱାରା ନୁହଁ, କୌଣସି ଗୋଷ୍ଠୀ ଦ୍ୱାରା ନୁହଁ, କୌଣସି ପନ୍ଥା ଦ୍ୱାରା ନୁହଁ । ଏଇଟା ମୋର ଦୃଷ୍ଟିକୋଣ, ଆଉ ମୁଁ ଏହାକୁ ପୂର୍ଣ୍ଣ ପ୍ରାଣରେ ତଥା ବିନା ସର୍ତ୍ତରେ ମୋର ଦୃଢ ସମର୍ଥନ ଜଣାଉଛି । **ସତ୍ୟ** ଅସୀମ, ଅନିୟନ୍ତ୍ରିତ ଓ ସମସ୍ତ ପଥ ଦ୍ୱାରା ଅଗମ୍ୟ ହୋଇଥିବାରୁ, ତାକୁ ସଂଗଠିତ କରି ହୁଏ ନାହିଁ; ସେଥିପାଇଁ ହେତୁ ଖାସ୍ କୌଣସି ଏକ ନିର୍ଦ୍ଦିଷ୍ଟ ପଥରେ ଲୋକଙ୍କୁ ବାଟ କଢାଇ ନେବା ଲାଗି କି ସେ ଦିଗରେ ଜୋର୍ ଜବର୍ଦସ୍ତି କରିବା ଲାଗି କୌଣସି ରକମର ପ୍ରତିଷ୍ଠାନ ଗଢା ଯିବା ଉଚିତ୍ ନୁହେଁ··· ।'' ✻[2]

× × × ×

---

✻ 1. The Years of Awakening (1975) P. 261

✻ 2. The Years of Awakening (1975) P. 272

"ପୁଣି, ତମମାନଙ୍କର ଧାରଣା ଯେ ସେହି ଆନନ୍ଦ-ଧାମର ଚାବିକାଠି ଅଳ୍ପ କେତୋଟି ବଡ଼ ବଡ଼ ଲୋକଙ୍କ ହାତରେ ରହିଛି। ଜାଣିଥାଅ, କେହି ହେଲେ ତାର ଜମାଦାର ନୁହନ୍ତି। ସେ ଚାବିକାଠିକୁ ହାତ ମୁଠାରେ ଧରି ରଖିବ, ଏ ଅଧିକାର କାହାରି ହେଲେ ନାହିଁ। ସେ ଚାବିକାଠି ତ ହେଉଛ **ତମେ ନିଜେ**; ଏବଂ ସେହି ଆତ୍ମର ବିକାଶ ତଥା ପରିଶୁଦ୍ଧତା ଓ ନିଷ୍କଳଙ୍କତାରେ ହିଁ ଶାଶ୍ୱତ ଧାମ ନିହିତ ଥାଏ...। ✳

"ଷ୍ଟାର୍" ସଂପ୍ରଦାୟକୁ ଭାଙ୍ଗି ଦେବା ପରେ ଓମ୍ମେନ୍ ଏବଂ ଓହାଇ ଠାରେ ଥିବା ଶିବିର ଗୁଡିକ ଜନସାଧାରଣଙ୍କ ଲାଗି ଉନ୍ମୁକ୍ତ ହୋଇଗଲା। କ୍ରିଷ୍ଣମୂର୍ତ୍ତି ସମସ୍ତ ଦାୟିତ୍ୱରୁ ନିଜକୁ ମୁକ୍ତ କରିନେଲେ, ନାନା ପ୍ରକାର ଟ୍ରଷ୍ଟର ଜମାଦାର ପଦମାନଙ୍କରୁ ଇସ୍ତଫା ଦେଇଦେଲେ, ଯୋଉ ବିପୁଳ ପରିମାଣର ଜମି ବାଡ଼ି, ଧନ ସମ୍ପତ୍ତି ଦାନ ସୂତ୍ରରେ ତାଙ୍କର ନାମରେ ଆସି ଠୁଳ ହୋଇଥିଲା, ସେ ସବୁ ପୁଣି ଫେରାପସ ହୋଇ ଗଲା।

୧୯୩୦ ମସିହାରେ କ୍ରିଷ୍ଣମୂର୍ତ୍ତି ବ୍ରହ୍ମବିଦ୍ୟା ସମିତିରୁ ବାହାରି ଆସିଲେ।

---

✳ The Years of Awakening (1975) P. 274

# କ୍ରିଷ୍ଣମୂର୍ତ୍ତିଙ୍କ ଶିକ୍ଷା ଓ ଜୀବନ-ତତ୍ତ୍ୱ

୧୯୨୨ ମସିହା ଅଗଷ୍ଟ ମାସରେ ଓହାଇ ଠାରେ ଯେତେବେଳେ ତାଙ୍କର ଜ୍ଞାନ ପ୍ରାପ୍ତି ହୋଇଥିଲା, ସେତେବେଳେ ସେଇ ସବୁ ବର୍ଷର ଦୁଃସହ ଶାରୀରିକ ଯନ୍ତ୍ରଣାର ଚରମ ସୀମାରେ ଥିବାବେଳେ ସେ ଯୋଉ ଉଲ୍ଲାସ, ଯୋଉ ପରମାନନ୍ଦ ଅବସ୍ଥା ଲାଭ କରିଥିଲେ, ତାହା ସାରା ଜୀବନ ଧରି ତାଙ୍କ ସହିତ ଲାଗି ରହିଥିଲା । ସମ୍ଭବତଃ ଏହି ସମୟରେ ଚୈତନ୍ୟର ଏ ଭଳି ଏକ ନୂତନ ପର୍ଯ୍ୟାୟରେ ସେ ଆସି ପହଞ୍ଚିଥିଲେ, ଯେଉଁଥିରେ କି ତାଙ୍କର ସ୍ମୃତି-ପଟରୁ ଅତୀତଟା ପ୍ରାୟ ସମ୍ପୂର୍ଣ୍ଣ ରୂପେ ପୋଛି ହୋଇଗଲା । ଏଇ କଥାଟା ତାଙ୍କ ଶିକ୍ଷା ସହିତ—ସେ ଯୋଉ କହୁଛନ୍ତି ଯେ ଖାଲି ବ୍ୟବହାରିକ ଜ୍ଞାନକୁ ଛାଡ଼ି ଦେଇ ବାକି ସବୁଥିରେ ସ୍ମୃତିଟା ହେଉଛି ଗୋଟାଏ ଅତି ଗୁରୁ ବୋଝ, ଯାହାକୁ କି ଗୋଟିଏ ଦିନରୁ ଆଉ ଗୋଟାଏ ଦିନକୁ ବୋହି ବୋହିକା ନେବା କଥା ନୁହେଁ—ପୂରା ମେଳ ଖାଇ ଯାଉଛି । ମଣିଷ ପ୍ରତ୍ୟେକ ଦିନ ମୃତ୍ୟୁ ବରଣ କରୁଥିଲେ ଯାଇ ତାର ଅବିରତ ପୁନର୍ଜନ୍ମ ଘଟି ଚାଲିଥାଏ ।

ଶ୍ରୀମତୀ ଆନି ବେସାନ୍ତଙ୍କ ପ୍ରତି କ୍ରିଷ୍ଣମୂର୍ତ୍ତିଙ୍କ ମନରେ ଗଭୀର ଶ୍ରଦ୍ଧା ଓ ସମ୍ମାନ ଥିଲା । ଶେଷ ପର୍ଯ୍ୟନ୍ତ ସେ ତାଙ୍କୁ ନିଜର ମା ଭଳି ଦେଖୁଥିଲେ । ୧୯୩୩ ମସିହା ସେପ୍ଟେମ୍ବର ୨୦ ତାରିଖରେ ଶ୍ରୀମତୀ ବେସାନ୍ତଙ୍କ ମୃତ୍ୟୁ, କ୍ରିଷ୍ଣମୂର୍ତ୍ତିଙ୍କର ବ୍ରହ୍ମବିଦ୍ୟା ସହିତ ଶେଷ ବନ୍ଧନଟିକୁ କାଟି ଦେଇଥିଲା । ସେହିଦିନ ଠାରୁ ଜୀବନର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସେ ନିଜକୁ ସମସ୍ତ ପ୍ରକାର ଆଧ୍ୟାତ୍ମିକ ସଂଗଠନରୁ ମୁକ୍ତ ରଖି, କାମ କରି ଯାଇଛନ୍ତି । ବର୍ତ୍ତମାନ୍ କ୍ରିଷ୍ଣମୂର୍ତ୍ତିଙ୍କ ନାମରେ ଚାରୋଟି ମୁଖ୍ୟ ପ୍ରତିଷ୍ଠାନ ଛିଡ଼ା ହୋଇଛି—ଗୋଟିଏ ଇଂଲଣ୍ଡରେ, ଗୋଟିଏ ଆମେରିକାରେ,

ଗୋଟିଏ ଭାରତରେ ଓ ଗୋଟିଏ ୱେଷ୍ଟ୍ ଇଣ୍ଡିଜ୍‌ରେ । ଏହା ଛଡ଼ା ବିଭିନ୍ନ ଦେଶରେ ସହଯୋଗୀ ପ୍ରତିଷ୍ଠାନମାନ ରହିଛି । କିନ୍ତୁ ମୁଖ୍ୟ ଗୁରୁତି ଯାକ ହେଉଛି ପୂର୍ବପୂର୍ବ ପ୍ରଶାସନିକ ଧରଣର; ସେ ସବୁର କାମ ହେଲା—କୃଷ୍ଣମୂର୍ତ୍ତିଙ୍କ ଭାଷଣ ଲାଗି ଆୟୋଜନ କରିବେ, ତାଙ୍କ ପୁସ୍ତକ ଆଦିର ପ୍ରକାଶନ ବ୍ୟବସ୍ଥା କରିବେ, ଆଉ ତାଙ୍କର ଅନୁ-ପ୍ରେରଣାରେ ଯୋଉ ସ୍କୁଲଗୁଡ଼ିକ ଗଢ଼ାଯାଇଛି, ତାକୁ ଚାଲୁ ରଖାଇ ବାରେ ସାହାଯ୍ୟ କରିବେ । ସେ ସବୁ ପ୍ରତିଷ୍ଠାନ ସମ୍ବନ୍ଧରେ ହେଉ ବା ତାଙ୍କର ବର୍ତ୍ତମାନର ଶିକ୍ଷାଦାନ ସମ୍ବନ୍ଧରେ ହେଉ—ଏ ସବୁରେ ଗୁପ୍ତ ବା ରହସ୍ୟାବୃତ ବୋଲି ଆଦୌ କିଛି ହେଲେ ନାହିଁ ।

× × × ×

ବ୍ରହ୍ମବିଦ୍ୟା ସମିତିରୁ ବାହାରି ଆସିବା ପରଠୁ ଜୀବନର ଶେଷ କାଳ ପର୍ଯ୍ୟନ୍ତ କୃଷ୍ଣମୂର୍ତ୍ତି ଅସୀମ ଉତ୍ସାହ ଉଦ୍ଦୀପନାର ସହିତ ପୃଥିବୀର ବିଭିନ୍ନ ସ୍ଥାନରେ ତାଙ୍କର ଓଜସ୍ୱିନୀ ଭାଷଣମାନ ଦେଇ ଚାଲିଥିଲେ । ପ୍ରତି ବର୍ଷ ସେ ନଭେମ୍ବର ଠାରୁ ଫେବୃୟାରୀ ଯାଏ ଭାରତରେ ରହୁଥିଲେ । ଏହି ରହଣି କାଳ ଭିତରେ ଦିଲ୍ଲୀ, ବାରଣାସୀ, ଋଷିଭାଲି, ମାଡ୍ରାସ ଓ ବମ୍ବେରେ ଜନସାଧାରଣଙ୍କ ଲାଗି ନିୟମିତ ଭାଷଣମାନ ଦେଉଥିଲେ । ଏହା ଛଡ଼ା ସାଧାରଣ ଆଲୋଚନା ସଭାର ବ୍ୟବସ୍ଥା ମଧ୍ୟ ରହୁଥିଲା ।

ତାଙ୍କର ନବେ ବର୍ଷ ବୟସରେ ସୁଦ୍ଧା ସେ ଶାରୀରିକ ତଥା ମାନସିକ ତେଜରେ ପରିପୂର୍ଣ୍ଣ ଥାଇ ପ୍ରତି ବର୍ଷ ଇଉରୋପ, ଭାରତ ଓ ଆମେରିକା ଘୂରି ବୁଲୁଥିଲେ । ସୁଇଜରଲ୍ୟାଣ୍ଡ୍‌ର ସାନେନ୍ ଠାରେ

ଆନ୍ତର୍ଜାତିକ ଗ୍ରୀଷ୍ମକାଳୀନ ଜନ ସଭାର ଆୟୋଜନ ହେଉଥିଲା; ତା ଛଡ଼ା ଦୈନିକ ଆଲୋଚନା ସଭାର ବ୍ୟବସ୍ଥା ମଧ୍ୟ ରହୁଥିଲା । ଏଇ ସବୁ ଆଲୋଚନାରେ ଯିଏ ଇଚ୍ଛା ସିଏ ଖୁସିରେ ଭାଗ ନେଇ ପାରୁଥିଲା । ଇଂଲଣ୍ଡର ବ୍ରକ୍‌ଉଡ୍‌ ପାର୍କ ଠାରେ ଶରତ କାଳୀନ ସଭାର ବ୍ୟବସ୍ଥା ହେଉଥିଲା । ତାଙ୍କର ଭାଷଣ ଶୁଣିବା ଲାଗି ସଭା ସ୍ଥଳକୁ ଜନସାଧାରଣଙ୍କର ଅବାଧ ପ୍ରବେଶ ଥିଲା ।

ଆରମ୍ଭରୁ ହିଁ ଶିକ୍ଷା ପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତି ଥିଲା । ଅନ୍ୟ ଯେ କୌଣସି ବିଷୟ ଅପେକ୍ଷା ଶିକ୍ଷା ଉପରେ ସେ ସବୁଠୁ ବେଶୀ ଜୋର ଦେଉଥିଲେ । ତାଙ୍କ ଜୀବନରେ ଏହା ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା । ସେ ଗଭୀର ଭାବରେ ଅନୁଭବ କରୁଥିଲେ ଯେ ପିଲାମାନଙ୍କର ଯଥାର୍ଥ ଶିକ୍ଷା ଉପରେ ହିଁ ଜଗତର ସୁସ୍ଥତା ନିର୍ଭର କରେ; ସେମାନଙ୍କର ଏକବାରେ ଛୁଆ ବୟସରୁ ହିଁ ତାଙ୍କୁ ଯଥାଯଥ ଭାବରେ ଶିକ୍ଷା ଦେବା କାମଟା ଆରମ୍ଭ କରାଯିବା ନିହାତି ଦରକାର । ରାଷ୍ଟ୍ରଗତ ଓ ଜାତିଗତ ବଦ୍ଧ ଧାରଣା, ପ୍ରତିଦ୍ୱନ୍ଦ୍ୱିତାର ମନୋବୃତ୍ତି କିମ୍ବା ସାଂସ୍କୃତିକ ପରମ୍ପରା ଓ ଭାବଧାରା, ଯାହା କି ମଣିଷ, ମଣିଷ ଭିତରେ ବାଡ଼ ପକାଇ ଥାଏ—ସେଇ ସବୁଗୁଡ଼ାକର ଦାଉରୁ ପିଲାଟିକୁ ବିମୁକ୍ତ ରଖି, ଯଦି ତାକୁ ଶିକ୍ଷା ଦିଆଯାଏ, ତେବେ ଜଗତରେ ଶାନ୍ତି ଦେଖା ଦେଇ ପାରେ । କିନ୍ତୁ ପିଲାମାନେ କେମିତି ବା ଏଭଳି ଢଙ୍ଗରେ ଶିକ୍ଷିତ ହେଇ ପାରିବେ, ଯେ ପର୍ଯ୍ୟନ୍ତ ତାଙ୍କୁ ଶିକ୍ଷା ଦେବା ଲାଗି ଯଥେଷ୍ଟ ସଂଖ୍ୟାରେ ମୁକ୍ତ-ମନର ବୟସ୍କ ଲୋକ ଆଗେଇ ନ ଆସିଛନ୍ତି ? ଗୋଟିଏ ପିଲା ପକ୍ଷରେ ମୁକ୍ତ-ମନ ହେଇ ରହିବାଟା ଯେତିକି କଠିନ କଥା, ଗୋଟିଏ ବୟସ୍କ ଲୋକ ପକ୍ଷରେ ତାର ଆଜନ୍ମ ପ୍ରତିପାଳିତ ବଦ୍ଧ ଧାରଣା ଇତ୍ୟାଦି ଇତ୍ୟାଦିରୁ ନିଜକୁ ବିମୁକ୍ତ କରି ପାରିବାଟା ଯେ ବହୁତ ବେଶୀ କଷ୍ଟକର ହେବ, ଏଥିରେ ସନ୍ଦେହ ନାହିଁ । କାରଣ ବୟସ୍କ ଲୋକ ପାଇଁ ଏହା ହେଉଛି ଏକ ସମ୍ପୂର୍ଣ୍ଣ ରୂପାନ୍ତର କରଣ ।

ସେ ପୁଣି କହିଛନ୍ତି ଯେ ଏହି ଶିକ୍ଷା ଭିତରେ ହିଁ ସତ୍ୟ ନିହିତ ରହିଛି, ଆଉ ଏହି ଶିକ୍ଷା ଯେପରି ଅଖଣ୍ଡ ରହେ, ଯେପରି ବିକୃତ କି ଅପଭ୍ରଷ୍ଟ ନ ହୁଏ ସେତିକି କେବଳ ଦେଖିବା କଥା । ଏହି ଶିକ୍ଷା ଲାଗି କୌଣସି ପ୍ରଚାରକ ବା ବ୍ୟାଖ୍ୟାକାରୀ ପଠାଇବାର ଅଧିକାର କାହାରି ହେଲେ ନାହିଁ ।

ଏହି ବିଶୃଙ୍ଖଳ ଓ ଧ୍ୱସ୍ତପ୍ରାୟ ଦୁନିଆରେ ମଣିଷ କିପରି ଏହି ଶିକ୍ଷାକୁ ତାର ଜୀବନ ଧାରାରେ ମିଶେଇ ଦେଇ ପାରିବ, ସେଇଟା ହିଁ ହେଉଛି ଅସଲ କଥା । ନିଜର ଆମୂଳ ରୂପାନ୍ତର କରଣ—ଯାହା କି ଜ୍ଞାନ ବା ସମୟ ଉପରେ କେବେ ନିର୍ଭର କରେ ନାହିଁ—ହେଉଛି ପ୍ରତ୍ୟେକ ଲୋକର ଦାୟିତ୍ୱ ।

କୃଷ୍ଣମୂର୍ତ୍ତି ଅସାଧାରଣ ଭାବରେ ସଜାଗ ପ୍ରକୃତିର ଥିଲେ । ଅତୀତକୁ ନେଇ ସେ କେତେବେଳେ ହେଲେ ଘାରି ହେଉ ନ ଥିଲେ କି ତାର ବୋଝ ଭାରକୁ ଗୋଟିଏ ଦିନରୁ ଆଉ ଗୋଟିଏ ଦିନକୁ ଟାଣି ଟାଣି ନେଉ ନ ଥିଲେ କିମ୍ବା ଭବିଷ୍ୟତ ପ୍ରତି ମଧ୍ୟ ତାଙ୍କର ଆଦୌ ଦୃଷ୍ଟି ନ ଥିଲା । ତାଙ୍କର ମନ ଅତି ପ୍ରଖର ଭାବରେ ବର୍ତ୍ତମାନ ଉପରେ ହିଁ କେନ୍ଦ୍ରୀଭୂତ ହେଉଥିଲା ।

ତାଙ୍କର ଗୋଟିଏ ଭାଷଣରେ ସେ ଅତି ଜୋର୍ ଦେଇ କହିଛନ୍ତି—

"ମନଟାକୁ ପୂରାପୂରି ଧ୍ୱଂସ କରିଦେବା ନେଇ ଆମେ ସଂପୃକ୍ତ, ତା' ହେଲେ ଯାଇ ଗୋଟାଏ ନୂଆ କଥା ଘଟି ପାରିବ । ଆମର ଏଇ ସଭାଗୁଡ଼ିକରେ ଆମେ ସେଇ ବିଷୟ ନେଇ ଭିତ୍ତିର ଆଲୋଚନା କରିବା —ମନ ଭିତରେ କି ଭଳି ଗୋଟାଏ ବିପ୍ଳବ ଘଟାଇ ହେବ । ଏଭଳି ବିପ୍ଳବ ଘଟିବା ନିହାତି ଦରକାର; ସମସ୍ତ ବିଗତ ଦିନର ସମ୍ପୂର୍ଣ୍ଣ ବିଲୋପ ଘଟିଲେ ଯାଇ ଅବା ଯାହା କିଛି ହେଇ ପାରିବ, କାରଣ ସେତିକି ନ

ହେବା ଯାଏ ଆମେ ଯେ ନୂଆ ସହିତ ମୁହଁ। ମୁହିଁ ହେବାକୁ ସମର୍ଥ ହେବୁ ନାହିଁ ! ଆଉ ଜୀବନଟା ହେଲା ସଦାବେଳେ ନୂଆ—ଠିକ୍ ପ୍ରେମ ପରି । ପ୍ରେମର କୌଣସି ବିଗତ କାଲି ନାହିଁ କି ଆସନ୍ତା କାଲି ନାହିଁ; ଏହା ନିତ୍ୟ-ନୂତନ··· । ତେଣୁ ତମେମାନେ ଯଦି ସଜାଗ ଥାଅ, ଆଉ ସତରେ ବି ଯଦି ଶୁଣୁଥାଅ, ତେବେ ଆମେ ସେଇ ପ୍ରଶ୍ନଟିକୁ ନେଇ ଆଲୋଚନା କରିବା—କେମିତି ସେଇ ମାରସ, ଶ୍ରାନ୍ତକ୍ଲାନ୍ତ, ଧ୍ୱଂସନ୍ତ ମନ, ଯୋଉ ମନ କି ଦୁଃଖ ଭାରରେ ସଦା ଭାରାକ୍ରାନ୍ତ, ଯୋଉଟା କି ଏତେ ସଂଗ୍ରାମ, ଏତେ ହତାଶା, ଏତେ ସୁଖ ମଉଜକୁ ଅଙ୍ଗେ ଲିଭେଇଛି, ଯୋଉ ମନ କି ଜୀର୍ଣ୍ଣ ଶୀର୍ଣ୍ଣ ହୋଇ ପଡ଼ିଛି, ଆଉ ତାରୁଣ୍ୟ ଅବସ୍ଥାଟା କି ଜିନିଷ ତା' କେବେ ଅନୁଭବ କରିନାହିଁ—କଅଣ କଲେ ସେଇ ମନର ରୂପାନ୍ତର ଘଟାଇ ହେବ ।”*[1]

× × ×

ଗୋଟିଏ ବହିରେ ଏଇ ମନ ବିଷୟ ନେଇ ସେ ଲେଖିଛନ୍ତି—

“ମନଟା ସଦାବେଳେ କିଛି ନା କିଛି ବିଷୟ ନେଇ ଲିପ୍ତ ରହି-ଥାଏ—ତାହା ଯେତେ ନଗଣ୍ୟ କି ଗୁରୁତ୍ୱପୂର୍ଣ୍ଣ ପରି ମନେ ହେଉଥାଉ ପଛକେ । ସେଇଟା ଠିକ୍ ସେଇ ମାଙ୍କଡ଼ଟି ଭଳି ସଦା ଅସ୍ଥିର, ସବୁ-ବେଳେ କେଁ କାଁ ଚେଁ ଚାଁ, ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ଡିଆଁ ଡେଇଁ କରୁଥାଏ । ··· ମନଟା ଖାଲି ହୋଇଯିବା, ସମ୍ପୂର୍ଣ୍ଣ ରୂପେ ଖାଲି ହୋଇ ଯିବାଟା କିଛି ଗୋଟାଏ ଆତଙ୍କଜନକ କଥା ନୁହଁ; ମନ ପକ୍ଷରେ ଭାବନା-ମୁକ୍ତ ହୋଇ ରହିବା, ଶୂନ୍ୟ ରହିବା, ପ୍ରଭାବ-ମୁକ୍ତ ହୋଇ ରହିବାଟା ନିହାତି ଦରକାର; ସେତିକି ହେଲେ ଯାଇ ତାହା ଅତଳ ସ୍ପର୍ଶୀ ଗଭୀରତାକୁ ଯାଇ ପାରିବ ।”*[2]

* 1. The Years of Fulfilment 1983 P. 114.
* 2. Krishnamurti's Note book (1976) P. 250.

ଥରେ ଜଣେ ଶ୍ରୋତା ତାଙ୍କୁ ଗୋଟିଏ କଥା ପଚାରିଥିଲେ—

"ଆପଣଙ୍କ କଥାଗୁଡ଼ାକ ମନ ଦେଇ ଶୁଣୁଥିଲା ବେଳେ ତ ସବୁ ବୁଝି ହେଇଯାଏ, ସବୁ ମତେ ନୂଆ ପରି ଲାଗେ । କିନ୍ତୁ ଘରେ ପୁଣି ମୋର ସେଇ ପୂର୍ବ ଅସ୍ଥିରତା ଆସି ମତେ କାବୁ କରି ପକାଏ । କୋଉ କାରଣରୁ ଏମିତି ହଉଛି ?"

ଏହାର ଜବାବରେ କୃଷ୍ଣମୂର୍ତ୍ତି କହିଥିଲେ—

"ଏଠି ଥିଲାବେଳେ ସେଇ କିଛି ସମୟ ପାଇଁ ତମେ ଆଉ ବ୍ରାହ୍ମଣ ହେଇ ରହି ନ ଥାଅ, ଉଚ୍ଚ ଜାତିର ଲୋକ କି ଯାହା ବି ତମେ ହେଇଥାଅ ପଛକେ—ସେ ସବୁ ତମେ ପୁରା ଭୁଲି ଯାଇଥାଅ । ତମେ ଖାଲି ସେ କଥାଗୁଡ଼ାକୁ ମନ ପ୍ରାଣ ଦେଇ ଶୁଣୁଥାଅ, ଖୋଜି ବାହାର କରିବାକୁ ଚେଷ୍ଟା କରୁଥାଅ । କିନ୍ତୁ ଯେତେବେଳେ ଏଠା ଛାଡ଼ି ଚାଲି-ଯାଅ, ତମେ ପୁଣି ତମ ନିଜ ଭିତରକୁ ଫେରିଆସ—ତମେ ପୁଣି ତମର ସେଇ ଜାତି ଭିତରକୁ, ତମର ରୀତିନୀତି, ତମର ଚାକିରି ବାକିରି, ତମ ପିଲା ପରିବାର ଭିତରକୁ ଫେରି ଆସ । ଅର୍ଥାତ୍ ପୁରୁଣାଟା ସଦାବେଳେ ନୂଆଟିକୁ ଶୋଷି ନେଇଯାଏ; ପୁରୁଣା ଅଭ୍ୟାସ, ମନ ଭିତରେ ରହି-ଥିବା ଧାରଣା, ପ୍ରଥା ପରମ୍ପରା, ଦେଶାଚାର ଲୋକାଚାର, ସ୍ମୃତି ଇତ୍ୟାଦି ଇତ୍ୟାଦି ଭିତରକୁ ନୂଆଟି ଶୋଷି ହେଇଯାଏ । ··· ମନଟା ଯେତେ-ବେଳେ ପୁରୁଣାରୁ ମୁକ୍ତ ଥାଏ, ସେତିକିବେଳେ ଜାଣି ସେଇଟା ସବୁ ଜିନିଷକୁ ନୂଆ କରି ଦେଖିପାରେ, ଆଉ ସେଇ ଦେଖିବା ଭିତରେ ହିଁ ଆନନ୍ଦ ଥାଏ ।"*

ଏଇ ହେଉଛି କୃଷ୍ଣମୂର୍ତ୍ତିଙ୍କ ଶିକ୍ଷାର ମୂଳ ତତ୍ତ୍ୱ । ଯେ ପର୍ଯ୍ୟନ୍ତ ଜଣେ ତାର ଚିର-ବନ୍ଧ ମନୋବୃତ୍ତିରୁ ନିଜକୁ ବିମୁକ୍ତ କରି ନ ନେଇଛି, ସେ ପର୍ଯ୍ୟନ୍ତ ସେ ସତ୍ୟର ସୂଚନା ପାଇ ପାରିବ ନାହିଁ ।

---

* The Years of Fulfilment, (1983) P. 68.

ମନସ୍ତାତ୍ତ୍ୱିକ ନିରାପତ୍ତା ସମ୍ବନ୍ଧରେ ସେ କହିଛନ୍ତି—

"ତମେ ଯଦି ପ୍ରକୃତରେ ଚିନ୍ତା କରି ଦେଖ, ତେବେ ସ୍ପଷ୍ଟ ଜାଣି ପାରିବ କେମିତି ତମର ସମଗ୍ର ଜୀବନଟା ବ୍ୟକ୍ତିଗତ ନିରାପତ୍ତା, ନିର୍ବିଘ୍ନତା ଓ ସ୍ୱାଚ୍ଛନ୍ଦ୍ୟ ପିଛରେ ଧାଇଁଛି । ନିରାପତ୍ତା ଲାଗି ଏଇ ଯୋଉ ଖୋଜା ଚାଲିସ, ତହିଁରୁ ଆପେ ଆପେ ଭୟ ଜନ୍ମ ନେଇଥାଏ । ଯେତେବେଳେ ତମେ ସ୍ୱାଚ୍ଛନ୍ଦ୍ୟ ପାଇବାକୁ ଚେଷ୍ଟା କରୁଥାଅ, ଯେତେବେଳେ ତମର ମନଟା ସଂଗ୍ରାମ, ସଂଘର୍ଷ ଓ ଦୁଃଖ ଶୋକକୁ ଏଡ଼ି ଦେଇ ଯିବା ଲାଗି କୌଶଳ କରୁଥାଏ, ସେଇଟା ତ ଯେମିତି ହେଲେ ଖସି ଯିବାର ବିଭିନ୍ନ ପନ୍ଥା ବାହାର କରିବ ହିଁ କରିବ । ଏଇ ପନ୍ଥାଗୁଡ଼ାକ ହିଁ ଆପର ଭ୍ରମ ରୂପେ ଦେଖାଦିଏ । ସେଇ ଭ୍ରମ ତମକୁ ଗୋଟିଏ ଧର୍ମ ସଂପ୍ରଦାୟରୁ ଅନ୍ୟ ଗୋଟିଏ ଧର୍ମ ସଂପ୍ରଦାୟକୁ, ଗୋଟାଏ ଦର୍ଶନ ତତ୍ତ୍ୱରୁ ଆଉ ଗୋଟାଏ ଦର୍ଶନ ତତ୍ତ୍ୱକୁ, ଜଣେ ଉପଦେଷ୍ଟାଙ୍କ ପାଖରୁ ଆଉ ଜଣକ ପାଖକୁ ଟାଣି ନେଇ ଯାଏ । ଏଇ ଜିନିଷଟାକୁ ତମେ ସତ୍ୟର ଅନ୍ୱେଷଣ, ସୁଖ ସନ୍ତୋଷର ଅନ୍ୱେଷଣ ବୋଲି ନାଆଁ ଦେଇଥାଅ ।

"କଥା ହେଲା ନିରାପତ୍ତା ବା ସାନ୍ତ୍ୱନା ନୁହଁ ଯେ—ଭାବନାର ସୁସ୍ପଷ୍ଟତା ହିଁ ହେଉଛି ଅସଲ ଜିନିଷ । କେବଳ ଭାବନାର ସୁସ୍ପଷ୍ଟତା ଦୁଃଖ ଶୋକର ମୂଳ କାରଣଟିକୁ ଦେଖାଇ ଦେଇଥାଏ, ସେତକ ହେଇ ପାରିଲେ ମଣିଷ ମୁକ୍ତ ହେଇଯାଏ । ଏହି ମୁକ୍ତି ଭିତରେ ବର୍ତ୍ତମାନର ପରମ ସୁଖ ନିହିତ ଥାଏ । ମୁଁ କହୁଛି, ସନାତନ ସତ୍ୟ ବୋଲି ଗୋଟାଏ କଥା ଅଛି, ଯାହାକୁ କି ମନଟା ତାର ସମସ୍ତ ପ୍ରକାର ଭ୍ରମରୁ ମୁକ୍ତ ଥିଲେ ଯାଇ କେବଳ, ଆବିଷ୍କାର କରି ନେଇ ପାରେ । ତେଣୁ ଯିଏ ତମ ଦୁଃଖ ଯାତନାର ଅବସାନ ଘଟାଇ ସ୍ୱାଚ୍ଛନ୍ଦ୍ୟ ଆଣିଦେବ ବୋଲି କହୁଛି, ତାକୁ ଖୁବ୍ ସାବଧାନ ଥିବ; କାରଣ ଏହାରି ଭିତରେ ନିଶ୍ଚିତ ରୂପେ ଶୋଷଣ ରହିଛି; ସେ ଖାଲି ଗୋଟାଏ ଫାଶ ବସେଇ ଦେଇଛି, ଆଉ ମାଛ ଜାଲରେ ପଡ଼ିଲା ପରି ତମେ ତା ଭିତରେ ଧରା ପଡ଼ିଯିବ ।"*

* The Years of Fulfilment, (1983) P. 3୪.

ଦୁଃଖ ବିଷୟରେ ସେ କହିଛନ୍ତି—

"ସମୟଟା କେବେ ଦୁଃଖକୁ ସମୂଳେ ପୋଛି ନିଭାଇ ଦେଇ ପାରେ ନାହିଁ । ଆମେ ହୁଏତ ଗୋଟିଏ ନିର୍ଦ୍ଦିଷ୍ଟ ଦୁଃଖ, ଯନ୍ତ୍ରଣାକୁ ଭୁଲି ଯାଇ ପାରୁ, କିନ୍ତୁ ମନର କୋଉ ଗହ୍ୱରରେ ଯାଇ ଦୁଃଖଟା ବସା ବାନ୍ଧି ରହିଥାଏ । ମୁଁ ଭାବୁଛି ଦୁଃଖଟାକୁ ଅଖଣ୍ଡ ଭାବରେ ପୋଛିଦେଇ ହେବ— ଆସନ୍ତା କାଲି ନୁହଁ କି କିଛି କାଳ ପରେ ନୁହଁ—ଏଇ ବର୍ତ୍ତମାନରେ ହିଁ ପ୍ରକୃତ ଘଟନାକୁ ଦେଖି ନେବାକୁ ପଡ଼ିବ, ଆଉ ତାକୁ ପାର ହୋଇ-ଯିବ ।"*[1]

× × × ×

"ବୁଝିବାର ଆଲୋକ ଦେଖା ଦେଲେ ହିଁ ଦୁଃଖର ସମାପ୍ତି ହୋଇଯାଏ । ଏହି ଆଲୋକଟା ଗୋଟିଏ ଅନୁଭୂତି ଦ୍ୱାରା ବା ବୁଝି-ନେବାର ଗୋଟିଏ ଝଲକରେ ଆଲୋକିତ ହୁଏ ନାହିଁ । ଏହି ବୁଝି-ନେବାଟା ସଦାବେଳେ ତା ନିଜକୁ ଆଲୋକିତ କରୁଥାଏ । ଏହାକୁ କେହି କେବେ ତମକୁ ଦେଇ ପାରିବ ନାହିଁ—ବହି ନୁହେଁ କି କୌଣସି କୌଶଳ କି ଶିକ୍ଷକ ବା ତ୍ରାଣକର୍ତ୍ତା—କେହି ବି ନୁହେଁ । ନିଜକୁ ବୁଝି ନେବାରେ ହିଁ ଦୁଃଖର ଅବସାନ ଘଟିଥାଏ ।"*[2]

କ୍ରିଷ୍ଣମୂର୍ତ୍ତିଙ୍କ ମତରେ ଧ୍ୟାନ କହିଲେ ଏଭଳି ଏକ ଅବସ୍ଥାକୁ ବୁଝାଏ ଯହିଁରେ କି କୌଣସି ରକମର ଦିଗ ପଥ କି ଲକ୍ଷ୍ୟ ନ ଥାଇ

---

* 1. The Years of Fulfilment (1983) P. 114.
* 2. The Urgency of Change (1971) P. 109.

ଜଣେ "ନିଜ ଭିତରେ ଅପ୍ରତ୍ୟାଶିତ ଓ ବିସ୍ମୟକର ଆବିଷ୍କାରମାନ କରି କରି ଚାଲିଥାଏ।" ଧ୍ୟାନର ସେଇ ଯୋଉ ସବୁ ପଦ୍ଧତି, ଯୋଉଥିରେ କି ଗୋଟିଏ ଶବ୍ଦକୁ ବାରମ୍ବାର ଉଚ୍ଚାରଣ କରିବା କିମ୍ବା କୌଣସି ଏକ ବସ୍ତୁ ବା ଧାରଣା ଉପରେ ମନ ନିବଦ୍ଧ କରିବା, ଯାହାକି ମନଟାକୁ ନିସ୍ତେଜ କରି ପକାଏ, ଶାନ୍ତ କରି ପକାଏ—ସେଇ ସବୁ ପଦ୍ଧତି ପ୍ରତି ତାଙ୍କର ଆଦୌ ସମ୍ମତି ନ ଥିଲା। ତାଙ୍କ କହିବା ଅନୁସାରେ ଧ୍ୟାନ ଚାଲିଥିବା ବେଳେ ମନଟା ତାର ସବୁଠୁ ବେଶୀ ତୀକ୍ଷ୍ଣ, ସବୁଠୁ ବେଶୀ ତତ୍ପର ଓ ସବୁଠୁ ବେଶୀ ତନ୍ନ ତନ୍ନ ରୂପେ ପରୀକ୍ଷା କରି ନେବାର ଅବସ୍ଥାରେ ଥାଏ।"※[1]

× × × ×

"ଜୀବନରେ ଦେଖା ଦେଉଥିବା ଶ୍ରେଷ୍ଠ କଳାମାନଙ୍କ ମଧ୍ୟରୁ ଧ୍ୟାନ ହେଉଛି ଗୋଟିଏ—ଏହା ବୋଧହୁଏ ସବୁଠାରୁ ମହାନ କଳା, ଆଉ ବୋଧହୁଏ କେହି ତାକୁ ଅନ୍ୟ କାହାରି ଠାରୁ ହେଲେ ଶିକ୍ଷା କରି ପାରିବେ ନାହିଁ; ସେଇଟା ହିଁ ହେଲା ତାର ମାଧୁର୍ଯ୍ୟ। ଧ୍ୟାନର କୌଣସି କଳା କୌଶଳ ନାହିଁ, ଫଳରେ କର୍ତ୍ତୃତ୍ୱର ପ୍ରଶ୍ନ ହିଁ ନାହିଁ। ଯଦି ତମେ ନିଜ ବିଷୟରେ କିଛି ଶିଖିବାକୁ ଚାହଁ, ତେବେ ନିଜକୁ କେବଳ ଲକ୍ଷ୍ୟ କରି ଯାଅ — କି ଭଳି ଢଙ୍ଗରେ ତମେ ଚାଲୁଛ, କି ଭଳି ଭାବରେ ଖାଉଛ, ଯାହା ଯାହା ସବୁ କହୁଛ, ବାଜେ ଗପ, ଘୃଣା, ଈର୍ଷା ଇତ୍ୟାଦି ଇତ୍ୟାଦି; ଏ ସବୁକୁ ବିନା ବାଛବିଚାରରେ ଖାଲି ସେମିତି ଯଦି ଲକ୍ଷ୍ୟ କରି କରି ଦେଖ—ତାହା ହେଉଛି ଧ୍ୟାନର ଏକ ଅଂଶ। ତେଣୁ ତମେ ଗାଡ଼ି ମଟରରେ ବସିଥିବା ବେଳେ କି ଗଛ-ଆଲୁଅ-ଭରା ବଣ ଜଙ୍ଗଲ ଭିତରେ ବୁଲୁଥିଲା ବେଳେ କିମ୍ବା ପକ୍ଷୀର କାକଳି ଶୁଣୁଥିଲା ବେଳେ କି ତମ ସ୍ତ୍ରୀ ବା ପିଲାର ମୁହଁକୁ ଚାହିଁଥିଲା ବେଳେ—ଧ୍ୟାନ ଚାଲିପାରେ।" ※[2]

× × × ×

※ 1. The Years of Fulfilment (1983) P 45.

※ 2. Freedom from the Known, (1969) P. 116

"ଧ୍ୟାନ କରିବା ଲାଗି ଯେତେ ସବୁ ଚେଷ୍ଟା ଉଦ୍ୟମ, ସେ ସବୁ ଧ୍ୟାନକୁ କେବଳ ପ୍ରତ୍ୟାଖ୍ୟାନ କରିଥାଏ ମାତ୍ର ।" ✻[1]

କୃଷ୍ଣମୂର୍ତ୍ତିଙ୍କ ମତରେ, ଯେତେ଼ ଫଳଦାୟକ ସାମାଜିକ ସଂସ୍କାର ହେଉ ପଛକେ ତା ଦ୍ୱାରା ମଣିଷର ଦୁଃଖ ଯନ୍ତ୍ରଣାର ସମାଧାନ କଦାପି ହୋଇ ପାରିବ ନାହିଁ; ସେଇଟା ଖାଲି ଉପର ଠାଉରିଆ ଭାବରେ ଯାହା କିଛି କରି ପାରିବ ସିନା ! କୃଷ୍ଣମୂର୍ତ୍ତିଙ୍କର କାର୍ଯ୍ୟ ମଣିଷର ସ୍ୱଭାବ ପ୍ରକୃତିକୁ ନେଇ ସଂପୃକ୍ତ ଥିଲା । ତାଙ୍କ କହିବା କଥା ହେଲା ଯେ ମଣିଷ ଠାରେ ଆମୂଳ ପରିବର୍ତ୍ତନ ନ ଘଟିବା ଯାଏ, ଅନ୍ୟ ଯେତେ ଯାହା ପରିବର୍ତ୍ତନ ସେଗୁଡ଼ାକ କୌଣସି କାମର ନୁହେଁ ।

ତାଙ୍କର ଗଭୀର ଉତ୍ସାହ ସଦାବେଳେ ଲୋକମାନଙ୍କୁ ଅନୁପ୍ରାଣିତ କରି ପକାଉ ଥିଲା । ମଣିଷକୁ ମନସ୍ତାତ୍ତ୍ୱିକ ସ୍ତରରେ କେମିତି ମୁକ୍ତ କରି ଦେବେ, ସେଇଟା ହିଁ ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ; ସେଇଥିପାଇଁ ଖାସ୍ ସେ "ଅର୍ଡ଼ର ଅଫ୍ ଦି ଷ୍ଟାର" ସଂଗଠନକୁ ଭାଙ୍ଗି ଦେଇଥିଲେ, ଆଉ ସେଇ ଏକା ଉତ୍କଣ୍ଠା ନେଇ ଶେଷ ପର୍ଯ୍ୟନ୍ତ କାମରେ ଲାଗିଥିଲେ । ସେ ଦୃଢ଼ ଭାବରେ କହୁଥିଲେ ଯେ ମଣିଷର ଭିତରି ଦୃଷ୍ଟି ଭଙ୍ଗୀର ସମ୍ପୂର୍ଣ୍ଣ ରୂପାନ୍ତର ଘଟିଲେ ଯାଇ ଏହି ମୁକ୍ତି ଆସିପାରେ; ଆଉ ନିଜ ଭିତରେ ଏହି ଆମୂଳ ପରିବର୍ତ୍ତନ ଘଟାଇବା, ତାହା ପୁଣି କାହିଁ କେବେ

✻ 1. Meditations (1980) (Foreword by Krishnamurti)

ନୁହଁ—ସଙ୍ଗେ ସଙ୍ଗେ, ଏଇ ମୁହୂର୍ତ୍ତରେ—ଏହା ପ୍ରତ୍ୟେକ ଲୋକର ଆପଣା ସାମର୍ଥ୍ୟ ଭିତରେ ହିଁ ରହିଛି । କୃଷ୍ଣମୂର୍ତ୍ତିଙ୍କ ଆଦ୍ୟ ଯୌବନରେ, ସେଇ ୧୯୨୨ ମସିହା ଅଗଷ୍ଟ ମାସରେ ଯୋଉ ଆନନ୍ଦ ଉଲ୍ଲାସ ଅଯାଚିତ ଭାବରେ ଆସି ତାଙ୍କୁ ଧରି ଦେଇଥିଲା, ଯୋଉଟା କି ସେହି ଦିନ ଠାରୁ ସାରା ଜୀବନ ଧରି ତାଙ୍କ ସହିତ ଲାଗି ରହିଥିଲା, ସେଇ ଆନନ୍ଦରେ ସମସ୍ତଙ୍କୁ ଭାଗୀ କରିବାକୁ ସେ ଏକାନ୍ତ ଉତ୍ସୁକ ଥିଲେ । ଦୁଃଖ ତାପର ମହୌଷଧି ସେ ଆବିଷ୍କାର କରି ପାରିଛନ୍ତି ବୋଲି ଜାଣିଥିଲେ, ଆଉ, ଜଣେ ଉଦାର ଚିକିତ୍ସକ ପରି ସେତିକ ସେ ଜଗତର କଲ୍ୟାଣ ନିମନ୍ତେ ବିତରଣ କରି ଚାଲିଥିଲେ ।



କୃଷ୍ଣମୂର୍ତ୍ତି ଓ ବ୍ରହ୍ମବିଦ୍ୟା ସମିତି ଭିତରେ ବନ୍ଧନଟା ଯେ ତୁଟି ଗଲା, ଏଇଟା କୃଷ୍ଣମୂର୍ତ୍ତି ତାହାଁରୁ ବାହାରି ଗଲେ ବୋଲି ନୁହଁ—ଯଦିଓ ଅନେକ ସଭ୍ୟ ତାହା ହିଁ ବିଶ୍ୱାସ କରନ୍ତି—ବରଂ ତାହା ତୁଟି ଯିବାର କାରଣ ହେଉଛି, ସେମାନେ ଯେ ଭଳି ଭାବରେ ସେଇ ବାଣୀକୁ ଶୁଣିବେ ବୋଲି ଆଶା କରିଥିଲେ, ସେ ରୂପରେ ତାକୁ ପାଇଲେ ନାହିଁ । ସେମାନଙ୍କ ମନ ଭିତରେ ଗୋଟିଏ ଛବି ଗଢ଼ି ହୋଇ ଯାଇଥିଲା—ସେ କଅଣ କଅଣ କହିବେ ଓ ତାଙ୍କର କାର୍ଯ୍ୟଧାରା କି ଭଳି ହେବ ଇତ୍ୟାଦି । ସେମାନେ ଆଶା କରୁଥିଲେ ଯେ ଏହି 'ଜଗତ୍-ଗୁରୁ' ଲୋକ-ମାନଙ୍କୁ କହିଦେବେ ସେମାନେ ମନରେ କି ପ୍ରକାର ବିଶ୍ୱାସ ରଖିବେ, 'ସତ୍ୟ'ର ସଂଜ୍ଞା କହିଦେବେ ଓ ତାଙ୍କର ମହାକାର୍ଯ୍ୟରେ ଅନୁଗାମୀମାନେ କି ଭଳି ଅଂଶ ଗ୍ରହଣ କରିବେ ସେତିକି ସ୍ଥିର କରିଦେବେ । କିନ୍ତୁ ଯେତେବେଳେ ତାହା ରୂପ ନେଲା ଏବଂ କୃଷ୍ଣମୂର୍ତ୍ତି ତାଙ୍କର ସମସ୍ତ କର୍ତ୍ତୃତ୍ୱକୁ ପୂରାପୂରି ଅସ୍ୱୀକାର କରିଦେଲେ, ଅନୁଗାମୀମାନଙ୍କୁ ପ୍ରତ୍ୟାଖ୍ୟାନ କରିଦେଲେ, କୌଣସି ପ୍ରକାର ବ୍ୟାଖ୍ୟାକରଣକୁ ନିଷିଦ୍ଧ କରିଦେଲେ, ଏହା କେତେକ ଅନୁଗାମୀଙ୍କ ଅହଂ ଭାବ ଉପରେ କୁଠାରାଘାତ କଲା ଓ ଅନ୍ୟମାନଙ୍କୁ ହତାଶ କରିଦେଲା । ଫଳରେ ସେମାନେ କ୍ଷୁବ୍ଧ ହେଲେ ।

× × × ×

କୃଷ୍ଣମୂର୍ତ୍ତିଙ୍କ ଠାରେ ସମସ୍ତଙ୍କ ଲାଗି ସଦାବେଳେ ଅସୀମ ସ୍ନେହ ଶ୍ରଦ୍ଧା ଉଚ୍ଛୁଳୁ ଥିଲା । ପ୍ରେମ କହିଲେ ଲୋକେ ଯାହା ବୁଝନ୍ତି, ସେ ଅର୍ଥରେ ସେ କେବେ ପ୍ରେମକୁ ନେଉ ନ ଥିଲେ । ତାଙ୍କ ଅର୍ଥରେ ପ୍ରେମ ହେଉଛି ଈର୍ଷା-ଆସକ୍ତି-ବିମୁକ୍ତ ଓ ତାହା କେବେ କୌଣସି ପ୍ରତିଦାନ ଖୋଜେ ନାହିଁ ।

ଯୋଉମାନେ ତାଙ୍କର କଥାକୁ ବର୍ଷ ବର୍ଷ ଧରି ଶୁଣି ଆସିଛନ୍ତି, ସେମାନେ କହନ୍ତି ତାଙ୍କର ଭାଷଣ, ଆଲୋଚନା ସଭା ଓ ବ୍ୟକ୍ତିଗତ କଥାବାର୍ତ୍ତା ବେଳେ ସେମାନେ ତାଙ୍କ ଠାରୁ ଏକ ଅଭୂତପୂର୍ବ ତେଜ ଓ ଉତ୍ତେଳନ ଭାବ ସଞ୍ଚାରିତ ହେବାର ଅନୁଭବ କରିଥାନ୍ତି ।

ତାଙ୍କ ଦର୍ଶନ ତତ୍ତ୍ୱକୁ ଅନେକ ଲୋକ ବ୍ୟାଖ୍ୟା କରିବା ଲାଗି ତାଙ୍କର ଅନୁମତି ମାଗିବାରୁ ସେ ୧୯୭୦ ମସିହାର ବୁଲେଟିନ୍‌ରେ ଏକ ସ୍ପଷ୍ଟୀକରଣ ଦେଇଥିଲେ—

"ମୁଁ ବରାବର କହି ଆସୁଛି ଯେ ଏହି ଶିକ୍ଷାର କେହିହେଲେ ବ୍ୟାଖ୍ୟାକାରୀ ରହିବା ଉଚିତ ନୁହଁ, କାରଣ ସେମାନେ ଶିକ୍ଷାକୁ ବିକୃତ କରି ପକାନ୍ତି ଏବଂ ଏହା ଫାଇଦା ଉଠାଇବାର ଏକ ପନ୍ଥା ହୋଇ-ଯାଏ । ଏହା ଲାଗି କୌଣସି ବ୍ୟାଖ୍ୟାକାରୀର ଆବଶ୍ୟକତା ହିଁ ନାହିଁ । କାରଣ ପ୍ରତ୍ୟେକ ଲୋକ କୌଣସି କର୍ତ୍ତୃତ୍ୱ ବା ମତବାଦ ଅନୁସାରେ ନ ଚାଲି, ନିଜେ ନିଜର ଯାବତୀୟ କ୍ରିୟାକଳାପକୁ ସିଧା ସଳଖେ ଖାଲି ଯନ୍ତର ସହିତ ଲକ୍ଷ୍ୟ କରିବା ଦରକାର । କିନ୍ତୁ ବଡ଼ ଦୁର୍ଭାଗ୍ୟର କଥା ଯେ ବ୍ୟାଖ୍ୟାକାରୀମାନେ ବାହାରି ପଡ଼ିଲେଣି । ଅବଶ୍ୟ ଏଥିପାଇଁ ଆମେ କୌଣସିମତେ ଦାୟୀ ନୋହୁଁ । ଏଇ କିଛି ବର୍ଷ ହେଲା କେତେକ ଲୋକ ନିଜକୁ ମୋର ଉତ୍ତରାଧିକାରୀ ବୋଲି ଜାହିର କରି ବସିଲେଣି; ପୁଣି ଏଇ ଶିକ୍ଷାର ଗୁରିଆଡ଼େ ପ୍ରଚାର ଲାଗି ସେମାନେ କୁଆଡ଼େ ମୋ ଦ୍ୱାରା ବିଶେଷ ଭାବରେ ନିଯୁକ୍ତ ହୋଇଛନ୍ତି ବୋଲି ମଧ୍ୟ କହି ବୁଲୁଛନ୍ତି । ମୁଁ ଆଗରୁ କହି ରଖିଛି, ପୁଣି ଆଜି ବି କହୁଛି ଯେ କୃଷ୍ଣମୂର୍ତ୍ତିଙ୍କ ଜୀବିତା-ବସ୍ଥାରେ ହେଉ ବା ମୃତ୍ୟୁପରେ ହେଉ ତାଙ୍କର ବା ତାଙ୍କ ଶିକ୍ଷାର କେହି ହେଲେ ପ୍ରତିନିଧି ନାହାନ୍ତି । ଏହା ଯେ ମତେ ପୁଣିଥରେ କହିବାକୁ ପଡ଼ିଲା, ଏଥିପାଇଁ ମୁଁ ଅତ୍ୟନ୍ତ ଦୁଃଖିତ ।"

# ଅନ୍ତିମର ପଥେ

ମାଡ୍ରାସ୍‌ରେ ତାଙ୍କର ଡଜନୋଟି ଭାଷଣ ମଧ୍ୟରୁ ୧୯୮୬, ଜାନୁୟାରୀ ୪ ତାରିଖର ଭାଷଣ ହିଁ ଥିଲା ଜନ ସାଧାରଣଙ୍କ ପାଇଁ ତାଙ୍କର ଶେଷ ଭାଷଣ । ଏଥିରୁ ଗୋଟିକରେ ସେ ମୃତ୍ୟୁ ସମ୍ପର୍କରେ କହିଥିଲେ··· ।

ସେତେବେଳକୁ ସେ ନିଜେ ମରଣର ଦୁଆରେ । ସ୍ୱାସ୍ଥ୍ୟ କ୍ରମଶ ଭାଙ୍ଗି ପଡ଼ିବାକୁ ଲାଗିଲାଣି, ଶରୀର ଦୁର୍ବଳ, ତଥାପି ସବୁଦିନ ପରି ସେଇ ସାଂଧ୍ୟ ଭ୍ରମଣ, ଚାଲରେ ମଧ୍ୟ ପୂର୍ବର ସେଇ ତେଜ । ଡାକ୍ତର କହିଲେ କାଲିଫର୍ଣ୍ଣିଆ ଯାଇ ସ୍ୱାସ୍ଥ୍ୟ ପରୀକ୍ଷା କରାଇବା ଦରକାର । ତେଣୁ ବମ୍ବେରେ ଥିବା ତାଙ୍କର ସାଧାରଣ ଭାଷଣ ବାତିଲ କରିଦେଇ, ଜାନୁୟାରୀ ୧୦ ତାରିଖରେ ସେ କାଲିଫର୍ଣ୍ଣିଆ ଗଲେ । ସେଠା ଡାକ୍ତରଖାନାରେ ପରୀକ୍ଷା ଦ୍ୱାରା ଜଣା ପଡ଼ିଲା ଯେ ତାଙ୍କର ଅଗ୍ନ୍ୟାଶୟରେ କର୍କଟ ରୋଗ ହୋଇଛି ଏବଂ ଅବସ୍ଥା ଅତ୍ୟନ୍ତ ସଙ୍ଗୀନ—ବଞ୍ଚିବାର ଆଶା ନାହିଁ । ଜାନୁୟାରୀ ୩୦ ତାରିଖରେ କୃଷ୍ଣମୂର୍ତ୍ତି ଡାକ୍ତରଖାନା ଛାଡ଼ି ଓହାଇ ଠାରେ ଥିବା ସେଇ ପାଇନ୍ କଟେଜ୍‌ରେ ତାଙ୍କର ଶେଷ କେତୋଟି ଦିନ କଟାଇବାକୁ ଚାହିଁଲେ । ୧୯୨୨ ମସିହାରେ ତାଙ୍କର ଜ୍ଞାନ ପ୍ରାପ୍ତି ଘଟିଥିଲାବେଳେ ସେ ଏଇ ପାଇନ୍ କଟେଜ୍‌ରେ ରହୁଥିଲେ । ମରିବାର ଅଳ୍ପ ଦିନ ଆଗରୁ ଦିନେ ଉପର ଓଳି କଟେଜ୍ ବାହାରେ ଥିବା ପିପର୍ ଗଛ ମୂଳକୁ—ଯେଉଁ ଠାରେ ତାଙ୍କର ୧୯୨୨ ମସିହାରେ ଜ୍ଞାନ ପ୍ରାପ୍ତି ଘଟିଥିଲା—ସେଇ ଗଛ ମୂଳକୁ ତାଙ୍କୁ ନେଇଯିବା ପାଇଁ କହିଥିଲେ । ଯେଠି ଏକୁଟିଆ ଜନ୍ତୁ

ସମସ୍ତ ରହିବା ପରେ, ପୁଣି ତାଙ୍କୁ ଆଉ ଟିକିଏ ଆଗକୁ ନେଇଯିବା ପାଇଁ କହିଲେ, ଯେପରି କି ସେ ପାହାଡଗୁଡିକୁ ଦେଖି ପାରିବେ । ସେଠି ବି କିଛି ସମୟ ରହି ଫେରି ଆସିଲେ ।

୧୭ ଫେବୃୟାରୀ ରାତି ୧୨-୧୦ ମିନିଟରେ ସେ ତାଙ୍କର ଶେଷ ନିଶ୍ୱାସ ତ୍ୟାଗକଲେ—ତାହା ଥିଲା ଭାରତୀୟ ସମୟ ୧୭ ଫେବୃୟାରୀ ଓ 'ଆଡ୍ୟାର ଦିବସ' । ମୃତ୍ୟୁ ପରେ ତାଙ୍କର ଦେହଟାକୁ ଗାଧୋଇ ଦେବାପାଇଁ ବିଶେଷ ଭାବରେ ସେଠାକାର ଜଣେ ଅତି ଘନିଷ୍ଠ ସହ-ଯୋଗୀଙ୍କ ଉପରେ ସେ ଦାୟିତ୍ୱ ଦେଇ ଯାଇଥିଲେ "ମୁଁ ସବୁବେଳେ ଜଣେ ଅତି ପରିଷ୍କାର ଲୋକ, ଖଣ୍ଡେ କନାରେ ଏ ଦେହଟାକୁ ଗୁଡ଼େଇ ଦିବ, ମୋର କୌଣସି ଜାତି ନାହିଁ", ଆଉ କୌଣସି ରକମର ଆନୁ-ଷ୍ଠାନିକ ବିଧି ବିଧାନ, ଶବ ସତ୍କାର, ଅନ୍ତ୍ୟେଷ୍ଟି କ୍ରିୟା ଆଦି ନ କରି, ଶବ ଦାହ କରିଦେବା ପାଇଁ ସେ ନିର୍ଦ୍ଦେଶ ଦେଇ ଯାଇଥିଲେ ।

କ୍ରିଷ୍ଣମୂର୍ତ୍ତିଙ୍କ ଅନ୍ତିମ ଇଚ୍ଛାକୁ ଅକ୍ଷରେ ଅକ୍ଷରେ ପାଳନ କରି-ଯାଇ, ସେଇ ଅନୁସାରେ ଦାହ କରି ଯାଇଥିଲା । ତାଙ୍କର ଚିତା ଭସ୍ମ ତିନୋଟି ପାତ୍ରରେ ଆମେରିକା, ଇଂଲଣ୍ଡ ଓ ଭାରତକୁ ପଠାଇ ଦିଆଗଲା । ସେ କହିଥିଲେ—"ସେ ଚିତା ଭସ୍ମକୁ ଖାଲି ବୁଣିଦେବ । ତା ଉପରେ କାହାରିକୁ ଚାଲି ବୁଲି କରିବାକୁ ଦେବ ନାହିଁ । ସେଠି ଗଛ ସବୁ ଲଗାଇ ଦେବ, ତାକୁ ଅନାମିକା ରଖିଦେବ ।"

× × × ×

ଫେବୃୟାରୀ ୧୪ ତାରିଖରେ ତାଙ୍କର ଜଣେ ଘନିଷ୍ଠ ସହଯୋଗୀ ତାଙ୍କୁ ଗୋଟିଏ କଥା ପଚାରିଥିଲେ—

"ଆପଣ ସାରା ଜୀବନ ଧରି ଅନ୍ୟମାନଙ୍କୁ ସାହାଯ୍ୟ କରି ଆସି-ଛନ୍ତି, ଅନ୍ୟମାନଙ୍କ ପାଇଁ ଆପଣ ସବୁବେଳେ ଭାବି ହେଉଛନ୍ତି । ମୋର

ଜୀବନଯାକ ମୁଁ ଆପଣଙ୍କଠୁ ସାହାଯ୍ୟ ପାଇ ପାଇ ଆସିଛି । ମତେ ଖାଲି ଏତିକି କହନ୍ତୁ—ଆପଣଙ୍କୁ କଣ କୋଉ ବାଟରେ ହେଲେ ମୁଁ ଟିକିଏ ସାହାଯ୍ୟ କରି ପାରିବି ନାହିଁ ? ···ଏଠି ଆପଣଙ୍କର ଏଇ ଦେହ କଥା ମୁଁ କହୁନାହିଁ; ତାର ତ ଯାହା ଯତ୍ନ ନେବା କଥା ନିଆ ଯାଉଛି; ମୁଁ ପଚାରୁଛି କିପରି ଭାବରେ ମୁଁ, ଆମେସବୁ ଆପଣଙ୍କୁ ସାହାଯ୍ୟ କରି ପାରିବୁ ?"

ଆଖି ବୁଜି କୃଷ୍ଣମୂର୍ତ୍ତି କଥାଗୁଡାକ ଶୁଣୁଥିଲେ । ଆଖି ମେଲି ସେ ଚାହିଁଲେ । ଓଠରେ ତାଙ୍କର ମୃଦୁ ହସ ଖେଳିଗଲା, ଆଉ ଅତି ଆନ୍ତରିକତାର ସହିତ କହିଲେ —"ଏହି ଶିକ୍ଷାର ମାଧୁର୍ଯ୍ୟକୁ କେହି ଯେପରି ନଷ୍ଟ କରି ନଦିଏ, ସେତିକି ଦେଖିବ ।"





# ଯାତ୍ରା *

ଆସୁଥିଲେ···ଆସୁଥିଲେ **ସେ** ମୋହର ଆଡ଼କୁ
ସ୍ତମ୍ଭୀଭୂତ ହୋଇ ମୁହିଁ ରହିଥିଲି ଚାହିଁ;
ଅନ୍ତର ଓ ଆତ୍ମା ମୋର ଚାହୁଁ ଚାହୁଁ ଠୁଳ କଲି ଶକ୍ତି,
ବୃକ୍ଷଲତା, ପକ୍ଷୀଗଣ କାନପାତି ରହିଗଲେ
ଏକାନ୍ତରେ ନୀରବେ ନଇଁଲେ;
ଆକାଶରେ ବଜ୍ରର ନିନାଦ—
ପରେ ପରେ ଏକାନ୍ତ ପ୍ରଶାନ୍ତ ।

ଦେଖିଲି **ସେ** ଚାହିଁଥିଲେ ମୋତେ,
ନିମିଷକେ ଦୃଷ୍ଟି ମୋର ହୋଇଗଲା ଦିଗନ୍ତ-ପ୍ରସାରୀ ।
ସେ ଦେଖାର ଅନ୍ତ ସତେ ନାହିଁ ବା ନଥିଲା
ବ୍ୟୂହ ଭେଦି ମନ ମୋର ବୁଝି ଚାଲିଥିଲା ।
ପ୍ରସାରିତ ହୃଦୟ ମୋ ସବୁ···ସବୁ ଆଲିଙ୍ଗିଲା;
ଅଭିନବ ପ୍ରେମ ଏକ ସଦ୍ୟ ଜନ୍ମ ନେଲା ।

**ତାଙ୍କ** ପଛେ ଚାଲିଲି ମୁଁ, ଉଚ୍ଚ କରି ଶିର,
ନୂଆ ଏକ ଜାଗରଣେ ପୁଲକିତ ସମଗ୍ର ଶରୀର ।
ଉଚ୍ଚତରୁ ଡାଳମାନ ଦୋହଲାଇ ହାତ,
କରୁଥିଲେ ଏକ ମନେ **ତାଙ୍କର** ସ୍ୱାଗତ;
ପୁଣି କେତେ ଝରାପତ୍ର, ମାଟି ଓ କାଦୁଅ,
ଝିଲିମିଲି ପାଣି ଧାର, ଶୁଷ୍କତରୁ ଡାଳ ।
କଥାର ସୁଅରେ ଭସି ଗାଆଁ ଲୋକେ ଚାଲିଥିଲେ
ହସି ହସି ନିଜବାଟେ, **ତାଙ୍କୁ** ଅଲକ୍ଷ୍ୟରେ ରଖି;

କୁକୁର ଯେ ଭୁକି ଭୁକି ଅଟଡ଼ାଇ କାନ
ଆସୁଥିଲେ କରିବାକୁ ସତେ ଆକ୍ରମଣ,
ସବୁଥିରେ ଦେଖିଲି ମୁଁ **ତାଙ୍କର** ପ୍ରକାଶ ।

ଧାଡ଼ିଏ ଘର ସେ ଯେ, ଘର ନୁହେଁ—ଶାନ୍ତିର ଆଳୟ,
ସୂର୍ଯ୍ୟାସ୍ତର ନାଲି ରଙ୍ଗେ ନାଲି ଛାତ କିବା ବଗିଚାତ;
ଉଦ୍ୟାନ ତ ନୁହେଁ, ସେ କି ଅବା ପରୀର ରାଇଜ—
ଅସୁମାରି ଫୁଲ-ପରି ଚାହିଁଛନ୍ତି ହୋଇ ଲାଜ ଲାଜ ।

ନଇଁଗଲା ସଂଧ୍ୟା, ଲିଭିଗଲା ଆକାଶରୁ ଆଭା,
ଛାୟା ମୂର୍ତ୍ତି ସମ ଛିଡ଼ା ହୋଇ ଦେଖୁଥିଲି
**ତାଙ୍କର** ସେ ଶାଶ୍ୱତ ପ୍ରକାଶ ।

ସରୁ ରାସ୍ତାଟିରେ ଆଗେ ଆଗେ ଚାଲିଲେ **ସେ**
**ପଛେ ପଛେ** ଚାଲିଥିଲି ମୁହିଁ,
ଘନ ଘନ ଚାହୁଁଥିଲେ ଫେରି
**ପଛେ** ଅବା ଆସୁଛି କି ନାହିଁ ।

ମୋ ଘର ଦୁଆର ଚଟେ ହୋଇଲେ ସେ ଠିଆ;
**ତାଙ୍କର** ସେ ଅମୃତ ସ୍ପର୍ଶରେ
ଅନ୍ତର ମୋ ହେଲା ଶୁଦ୍ଧ ପୂତ,
ଝଙ୍କାରି ଉଠିଲା ପ୍ରାଣେ ଏକ ଅଭିନବ ଗୀତ ।

ସେଇ ଦିନୁ ସମ୍ମୁଖେ ମୋ ଚିର ବିରାଜିତ
ଯେଉଁ ଦିଗେ ଚାହେଁ ମୁହିଁ, ସଦା ଉଭା ସେ ତ
ସବୁଠି ସେ **ତାଙ୍କର** ମହିମା

ସବୁଥିରେ **ତାଙ୍କର** ଗରିମା
କି ମହା ଶାନ୍ତିରେ ପ୍ରାଣ ହେଲା ଉଦ୍‌ଭାସିତ,
ଏତେ କାଳ ଥିଲା ହାୟ, ଅଜଣାରେ ସେ ତ ।

ଅନନ୍ତ ପ୍ରଶାନ୍ତି ମୋ ଚକ୍ଷୁରେ ଭରିଲା
ସବୁଥିରେ ବୋଳି ଦେଲା ସେ ମହା ପରଶ;
ସେହିକାଳୁ ଏ ହୃଦୟ **ତାଙ୍କର** ଆବାସ ।



...What is sacred?

That can only be understood or happen when there is complete freedom—from fear, from sorrow—and when there is this sense of love, and compassion with its own intelligence. Then, when the mind is utterly still, that which is sacred can take place.

---

* J. Krishnamurti—A Walk—(1928)

ଶ୍ରୀ ଜେ. କୃଷ୍ଣମୂର୍ତ୍ତିଙ୍କର ନଅଟି ଅନୁଦିତ ପୁସ୍ତକ :—

(୧) **ଆଗାମୀ ଜୀବନ** ଡିମାଇ ପୃ୩୫୨ଷ୍ଠା ମୂଲ୍ୟ : ଅବନ୍ଧା ଟ୧୨-୦୦
**(Life Ahead)** ଛପା ୧୯୮୦ ବନ୍ଧାଇ ଟ୧୫-୦୦

(୨) ଧ୍ୟାନ ୧୯୬୯ କ୍ରାଉନ ପୃ ୮୫
**(Meditations 1969)** ଛପା ୧୯୮୦

ମନ ଗହନର ଉନ୍ମୋଚନ
**(Inward Flowering)**

ମନର ଏକ ସଂଳାପ ଏକତ୍ର ତିନିଖଣ୍ଡ ଅବନ୍ଧା—ଟ୨-୨୫
**(A Dialogue with oneself)** ବନ୍ଧାଇ ଟ୩-୨୫

(୩) **ଶିକ୍ଷା ଓ ଜୀବନର ତାତ୍ପର୍ଯ୍ୟ** ଡିମାଇ ୧୭୩ପୃ:ଅବନ୍ଧା—୫-୦୦
ଛପା ୧୯୮୧ ବନ୍ଧାଇ—ଟ୭-୦୦

**(Education and the Significance of life)**

(୪) **ପରିବର୍ତ୍ତନ ଏକାନ୍ତ ଜରୁରୀ**
ଡିମାଇ ପୃ୨୫୦ଷ୍ଠା ଛପା ୧୯୮୧ ଅବନ୍ଧା—ଟ୧୧-୦୦
**(The Urgency of Change)** ବନ୍ଧାଇ—ଟ୧୩-୦୦

(୫) **ପରିଚିତରୁ ମୁକ୍ତି** ଡିମାଇ ପୃ ୧୭୨ ଷ୍ଠା ଅବନ୍ଧା—ଟ୧୦-୦୦
**(Freedom from the Known)**
ଛପା ୧୯୮୧ ବନ୍ଧାଇ—ଟ୧୨-୦୦

(୬) ଧ୍ୟାନ ଡିମାଇ ପୃ ୭୪ ଅବନ୍ଧା—ଟ୪-୦୦
(Meditations) ଛପା ୧୯୮୨ ବନ୍ଧାଇ—ଟ୬-୦୦

(୭) ଏଇ ଯେ ସଂସ୍କୃତି ଡିମାଇ ପୃ ୪୦୮ ବନ୍ଧାଇ—ଟ୨୦-୦୦
(This Matter of Culture) ଛପା ୧୯୮୩

(୮) ଏକ ହିଁ ବିପ୍ଳବ ଡିମାଇ ପୃ: ୨୯୮ ବନ୍ଧାଇ—ଟ୨୦-୦୦
(The Only Revolution) ଛପା ୧୯୮୪

(୯) କୃଷ୍ଣମୂର୍ତ୍ତି ଦିନ ଲିପି ଡିମାଇ ପୃ ୧୭୬ ବନ୍ଧାଇ—ଟ୧୩-୦୦
(Krishnamurti's Journal) ଛପା ୧୯୮୫

(୧୦) କୃଷ୍ଣମୂର୍ତ୍ତି କିଏ କାହିଁକି ଡିମାଇ ପୃ:୬୦ ବନ୍ଧାଇ—ଟ୫-୦୦
(ସଂକ୍ଷିପ୍ତ ଜୀବନୀ) ଛପା ୧୯୮୬